# ପଲ୍ଲୀକବି ସୃଷ୍ଟିପରିଧି

ସଂପାଦନା :
ଡଃ ପ୍ରସନ୍ନ କୁମାର ମହାନ୍ତି



ଓଡ଼ିଶା ସାହିତ୍ୟ ଏକାଡ଼େମୀ

ପଲ୍ଲୀକବି ସୃଷ୍ଟିପରିଧି

ପ୍ରକାଶକ :

ଓଡ଼ିଶା ସାହିତ୍ୟ ଏକାଡ଼େମୀ

ପ୍ରଥମ ମୁଦ୍ରଣ : ୧୯୯୭

ପ୍ରଚ୍ଛଦ : ବିଦ୍ୟାଧର ମହାରଣା

ମୂଲ୍ୟ : ୪୫ ଟଙ୍କା

(ନନ୍ଦକିଶୋର ଫାଉଣ୍ଡେସନ୍‌ଙ୍କ ଆଂଶିକ ଆର୍ଥିକ ସହାୟତାରେ ପ୍ରକାଶିତ)

PALLIKAVI SRUSTI PARIDHI : Edited by
Dr. Prasanna Kumar Mohanty : Published by
Orissa Sahitya Akademi, Bhubaneswar-751 014
First Edition : 1997
Price : Rs. 45/-
ISBN-81-7586-027-6

# ସୂଚିପତ୍ର


୧. ଅଗ୍ରଲେଖ : ଡଃ ହରପ୍ରସାଦ ପରିଛା ପଟନାୟକ

୨. ମୁଖବନ୍ଧ : ଡଃ ପ୍ରସନ୍ନ କୁମାର ମହାନ୍ତି ............................................ ୧

୩. 'ଗଛ ଓ କାଠୁରିଆ' ଗୀତ : ଏକ ଅନୁଶୀଳନ : ଡଃ ନଟବର ସାମନ୍ତରାୟ ... ୮

୪. ପଲ୍ଲୀକବି ନନ୍ଦକିଶୋର : ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) .......... ୧୫

୫. ପଲ୍ଲୀକବିଙ୍କର ପଲ୍ଲୀଚିତ୍ର : ଏକ କଳନା : ଡଃ ବାସୁଦେବ ସାହୁ ............. ୧୯

୬. ନନ୍ଦକିଶୋରଙ୍କ କଥାଶିଳ୍ପ : 'କନକଲତା' : ଡଃ ବିଭୂତି ପଟ୍ଟନାୟକ .......... ୨୪

୭. ପଲ୍ଲୀପ୍ରାଣ ନନ୍ଦକିଶୋର : ଡଃ ହରପ୍ରସାଦ ପରିଛା ପଟନାୟକ ............. ୩୦

୮. ପଲ୍ଲୀଜୀବନର ଦାର୍ଶନିକ ନନ୍ଦକିଶୋର ଓ ରବର୍ଟ ଫ୍ରଷ୍ଟ : ଡଃ ବନମାଳୀ ବାରିକ ..... ୩୬

୯. ଋତୁବର୍ଣ୍ଣନ ପରଂପରାରେ ନନ୍ଦକିଶୋରଙ୍କ ରମଣୀୟ ଶକ୍ତି : ଆଚାର୍ଯ୍ୟ ଭାବାନନ୍ଦ .... ୪୧

୧୦. ବର୍ଷା ଓ ବିଷାଦ : କବି ନନ୍ଦକିଶୋର : ଡଃ ପ୍ରତିଭା ଶତପଥୀ ................. ୪୬

୧୧. ଉତ୍କଳ ସମ୍ମିଳନୀ କବିଗୋଷ୍ଠୀ ଓ ପଲ୍ଲୀକବି ନନ୍ଦକିଶୋର : ଡଃ ଗୋପାଳକୃଷ୍ଣ ଶ୍ରୀଚନ୍ଦନ ..... ୫୦

୧୨. ନନ୍ଦକିଶୋର : ଏକ ଶ୍ରଦ୍ଧାନିବେଦନ : ଡଃ ସଂଘମିତ୍ରା ମିଶ୍ର .................... ୫୫

୧୩. ନବଯୁଗର ଚାରଣ : ନନ୍ଦକିଶୋର : ଶ୍ରୀ ଦେବେନ୍ଦ୍ର କୁମାର ଦାଶ ............. ୬୦

୧୪. ଉତ୍କଳୀୟ ନାରୀ ସମାଜ ଓ ନନ୍ଦକିଶୋର : ଡଃ ଶରତ ଚନ୍ଦ୍ର ନାୟକ .......... ୬୮

୧୫. ନନ୍ଦକିଶୋର ବଳ : ଡଃ କୈଳାସ ଚନ୍ଦ୍ର ଦାଶ .................................. ୮୧

୧୬. ପଲ୍ଲୀପ୍ରକୃତିର କବି ନନ୍ଦକିଶୋର : ଡଃ ବସନ୍ତ କୁମାର ପଣ୍ଡା ................. ୮୬

୧୭. 'ନିର୍ଝରିଣୀ'ରେ ଜୀବନାଲେଖ୍ୟ : ଡଃ ବିଜୟ କୁମାର ମହାନ୍ତି ................ ୯୪

୧୮. ମାନବିକ ଚେତନାର ଉତ୍ତରଣ : ନନ୍ଦକିଶୋରଙ୍କ ବୈଶିଷ୍ଟ୍ୟ : ଶ୍ରୀ ସୌରୀବନ୍ଧୁ କର .. ୧୦୦

୧୯. ଉଡ଼ିଗଲେ ଗେଣ୍ଡାଳିଆ : ଡଃ ପ୍ରଦୀପ କୁମାର ଧଳ ........................... ୧୦୫

୨୦. ପୃଷ୍ଠଲେଖ : ଆଚାର୍ଯ୍ୟ ଭାବାନନ୍ଦ .................................................. ୧୦୮

୨୧. ନନ୍ଦକିଶୋର ସାହିତ୍ୟ : ସହାୟକ ଗ୍ରନ୍ଥସୂଚି ...................................... ୧୧୧

## ପରିଶିଷ୍ଟ

୨୨. ନନ୍ଦକିଶୋର ବଳ : ବଂଶଲତା ...................................................... ୧୧୩

୨୩. ନନ୍ଦକିଶୋର ବଳ : ସଂକ୍ଷିପ୍ତ ଜୀବନପଂଜି ........................................ ୧୧୫

୨୪. ଏହି ସଂକଳନର ଲେଖା ଓ ଲେଖକ ................................................ ୧୧୯



# ଅଗ୍ରଲେଖ

ସାରସ୍ୱତ ସାଧକ ନନ୍ଦକିଶୋର ବଳ (୧୮୭୫-୧୯୨୮) ଓଡ଼ିଆ ସାହିତ୍ୟ ଇତିହାସରେ 'ପଲ୍ଲୀକବି' ଭାବରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ପଲ୍ଲୀର ଅସରନ୍ତି ସୌନ୍ଦର୍ଯ୍ୟ-ରୂପ-ବିଭବ ଓ ସରଳ, ମଧୁମୟ ପଲ୍ଲୀ ଜୀବନକୁ ସେ କାବ୍ୟରୂପ ପ୍ରଦାନ କରି ତାଙ୍କର ଗଭୀର ପଲ୍ଲୀପ୍ରୀତି ଓ ପଲ୍ଲୀପ୍ରାଣତାର ପରିଚୟ ଦେଇଛନ୍ତି । ଓଡ଼ିଶାର ପୁରପଲ୍ଲୀରେ ପ୍ରଚଳିତ ଲୋକମୁଖର ଭାଷା, କଥା, ସଂଗୀତ, ଢଗଢମାଳି ଆଦି ଲୋକ ସାହିତ୍ୟର ଅମୂଲ୍ୟ ଉପାଦାନକୁ ଉପଯୋଗକରି ନିଜର ଅସାଧାରଣ ସୃଜନଶକ୍ତି ବଳରେ ବିମୁଗ୍ଧ ତଥା ବିଦଗ୍ଧ ସାହିତ୍ୟ ସୃଷ୍ଟି କରିବାରେ ସେ ଏକ ଅନନ୍ୟ ପ୍ରତିଭା । କାବ୍ୟ-କବିତାର ବିଷୟବସ୍ତୁର ସୁନିର୍ବାଚନ ଓ ଭାଷା-ଭାବର ପ୍ରୟୋଗ କୌଶଳରେ ତାଙ୍କର ସୃଜନଶୀଳତାର ସୁସ୍ପଷ୍ଟ ସ୍ୱାକ୍ଷର ଅଙ୍କିତ ।

କ୍ରୀଡ଼ାଚଞ୍ଚଳ ଶିଶୁର କୋମଳ ମନରେ ମନଛୁଆଁ କବିତାର ମଧୁର ଝଙ୍କାର ସୃଷ୍ଟି କରି ନନ୍ଦକିଶୋର ଶିଶୁସାହିତ୍ୟ ସ୍ରଷ୍ଟାର ଶୀର୍ଷ ସ୍ଥାନରେ ଅଧିଷ୍ଠିତ ହୋଇପାରିଛନ୍ତି । ତାଙ୍କରି ଲେଖନୀ ନିସୃତ 'ନାନାବାୟାଗୀତ', 'ନିର୍ଝରିଣୀ', 'ପଲ୍ଲୀଚିତ୍ର', 'ବସନ୍ତକୋକିଳ', 'ସଂଧ୍ୟାସଂଗୀତ', 'ଶର୍ମିଷ୍ଠା' ଆଦି କାବ୍ୟଗ୍ରନ୍ଥ ଓଡ଼ିଆ ସାହିତ୍ୟର ଶାଶ୍ୱତ ସଂପଦ । ଏହି ପ୍ରତିଭାଧର ଶିଳ୍ପୀ ଏ ଜାତିର ଚିର ନମସ୍ୟ ।

ଅତି ଆନନ୍ଦର କଥା, ପଲ୍ଲୀକବିଙ୍କ ପବିତ୍ର ଜୟନ୍ତୀ ପାଳନ ଅବସରରେ କବି ଓ ସମାଲୋଚକ ଅଧ୍ୟାପକ ଡଃ ପ୍ରସନ୍ନ କୁମାର ମହାନ୍ତିଙ୍କ ଦ୍ୱାରା ସଂପାଦିତ ଏହି 'ପଲ୍ଲୀକବି ସୃଷ୍ଟି-ପରିଧି' ଶୀର୍ଷକ ଗ୍ରନ୍ଥ, ଯାହା ପଲ୍ଲୀକବିଙ୍କ ସାରସ୍ୱତ ସୃଷ୍ଟିର ବିଭିନ୍ନ ଦିଗ ଉପରେ

ଆଲୋଚିତ କେତେକ ସୁନିର୍ବାଚିତ ଉପାଦେୟ ପ୍ରବନ୍ଧର ଏକ ମନୋଜ୍ଞ ସଂକଳନ, ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍‌ଙ୍କ ଆର୍ଥିକ ସହାୟତାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ପ୍ରକାଶିତ ହୋଇପାରିଛି । ପୁସ୍ତକର ପ୍ରକାଶନ ଅବସରରେ ସଂପାଦକ ଡଃ ପ୍ରସନ୍ନ କୁମାର ମହାନ୍ତି ଏବଂ ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍‌ର କର୍ମକର୍ତ୍ତାମାନଙ୍କୁ ସାଧୁବାଦ ଜଣାଉଛି ।

ଶେଷରେ ଏହି 'ପଲ୍ଲୀକବି **ସୃଷ୍ଟି**-ପରିଧି' ପାଠକର ବିଶାଳ ଓ ବିସ୍ତୃତ ପରିଧିକୁ ବ୍ୟାପ୍ତ ହୋଇ ନନ୍ଦକିଶୋର ସୃଷ୍ଟି-ପ୍ରତିଭାକୁ କାଳଜୟୀ କରୁ-ଏହାହିଁ କାମନା । □

**ହରପ୍ରସାଦ ପରିଛା ପଟନାୟକ**
**ସଚିବ**
**ଓଡ଼ିଶା ସାହିତ୍ୟ ଏକାଡେମୀ**

# ମୁଖବଂଧ

ପଲ୍ଲୀକବି ନନ୍ଦକିଶୋର ବଳ ଊନବିଂଶ ଶତାବ୍ଦୀର ଅନ୍ତିମ ଦଶକରେ ସାହିତ୍ୟ ସାଧନାଲାଗି କଲମ ଧରିଲା ବେଳକୁ ଓଡ଼ିଆ ସାହିତ୍ୟରେ 'ଆଧୁନିକ ଯୁଗ'ର ଭିତ୍ତିସ୍ଥାପନ ହୋଇସାରିଲାଣି । କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନ ସେତେବେଳକୁ ନୂଆ ରୁଚିର ସାହିତ୍ୟ ସର୍ଜନରେ ସକ୍ରିୟ । ପରିଣତ ବୟସରେ ସର୍ଜନଶୀଳ ସାରସ୍ୱତ ପରିଧି ମଧ୍ୟକୁ ପାଦ ବଢ଼ାଇଥିବା ଫକୀରମୋହନ ତଥା ନନ୍ଦକିଶୋର ପ୍ରାୟ ଏକା ସମୟରେ ସାହିତ୍ୟ ସାଧନା ଆରମ୍ଭ କରନ୍ତି । ପଶ୍ଚିମ ଓଡ଼ିଶାରେ ସ୍ୱଭାବ କବି ଗଙ୍ଗାଧର ମଧ ନିଜର ସ୍ୱକୀୟ ପ୍ରତିଭା ବଳରେ ସେତେବେଳକୁ ଚର୍ଚ୍ଚିତ ଓ ସ୍ୱୀକୃତ । ଆଧୁନିକ ଯୁଗର ଉକ୍ତ ଚାରି ମହାରଥୀଙ୍କ ସାରସ୍ୱତ ପ୍ରତିଷ୍ଠାର ଉଜ୍ଜଳ ବଳୟ ଭେଦି ସେମାନଙ୍କ ସମସାମୟିକ କାଳରେ ପଲ୍ଲୀକବି ନନ୍ଦକିଶୋର ଯେ ଆପଣାର ସ୍ୱର୍ଦ୍ଧିତ ସାରସ୍ୱତ ଉତ୍କର୍ଷର ଅଟଳତା ଜାହିର କରିଥିଲେ, ତାହାହିଁ ସ୍ୱତଃ ତାଙ୍କର ପ୍ରଚଣ୍ଡ ପ୍ରତିଭା, ଅନନ୍ୟ ମୌଳିକତା, ସୃଜନଶୀଳ ଅସାମାନ୍ୟତା ଓ କମନୀୟ କବିତ୍ୱର ସ୍ପଷ୍ଟ ପରିଚୟ ପ୍ରଦାନ କରେ ।

ଊନବିଂଶ ଶତାବ୍ଦୀର ଅଷ୍ଟମ ଦଶକଠାରୁ ଓଡ଼ିଆ ସାହିତ୍ୟରେ ଯେଉଁ ଆଧୁନିକତାର ସୂତ୍ରପାତ ହୋଇଥିଲା ତାହାର ମୂଳ ଆଧାର ଥିଲା ପାଶ୍ଚାତ୍ୟ ସାହିତ୍ୟାଦର୍ଶ । ବୁଦ୍ଧି, ବିଜ୍ଞାନ, ଶାସନ, କୂଟନୀତି, ଯୁଦ୍ଧ, ବାଣିଜ୍ୟ, କୃଷି, କାରିଗରୀ--ସବୁକ୍ଷେତ୍ରରେ ଆମଠୁ ଅଧିକ ପ୍ରଗତିଶୀଳ ବୋଲି ପ୍ରମାଣ କରିବାକୁ ବସିଥିଲେ ପାଶ୍ଚାତ୍ୟ ରାଷ୍ଟ୍ର ସମୂହ । ଏବଂ ଯାହା ନୂତନ ଓ ପ୍ରଗତିଶୀଳ ତାହାକୁ 'ଆଧୁନିକ' ଭାବରେ ଗ୍ରହଣ କରାଯିବା ସ୍ୱାଭାବିକ । ତେଣୁ ସେମାନଙ୍କ ସାହିତ୍ୟ ମଧ କେତେକ ନୂତନ ବିଭାବକୁ ନେଇ ଆମ ସାହିତ୍ୟ ତୁଳନାରେ ଆଧୁନିକତର ବିବେଚିତ ହେଲା । ଅଷ୍ଟମ ଦଶନ୍ଧି ବେଳକୁ ଓଡ଼ିଶାରେ ଯେଉଁ ଇଂରାଜୀ ଶିକ୍ଷିତ ଆଧୁନିକ ଯୁବ ସମାଜର ଅଭ୍ୟୁଦୟ ହେଲା, ସେମାନେ ଓଡ଼ିଆ ସାହିତ୍ୟରେ ଆଉ ଦୁଇଶହ ବର୍ଷର ପୁରୁଣା ରୀତିଯୁଗୀୟ ସାହିତ୍ୟକୁ ପସନ୍ଦ କଲେ ନାହିଁ । ସେହି ସମୟରେ କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଆବିର୍ଭୂତ ହୋଇ 'ଆଧୁନିକ' ଓଡ଼ିଆ ପାଠକମାନଙ୍କର ପରିବର୍ତ୍ତିତ ନୂଆ

ଚାହିଦାକୁ ପୂରଣ କଲେ । ମାତ୍ର ଗୋଟିଏ ଜାତି ତା'ର ଐତିହ୍ୟ, ପରଂପରା ଓ ସଂସ୍କୃତିର କବର ଉପରେ ନୂଆ ସଭ୍ୟତାର ଇମାରତ ଗଢ଼ିପାରେ ନାହିଁ । ଆମ ସଂସ୍କୃତି ଓ ପରଂପରା ଭିତରେ ହିଁ ଆମର ଅସଲ ଐଶ୍ୱର୍ଯ୍ୟ ଛିଇଁ ରହିଥିଲା । ଉତ୍କଳର ପ୍ରକୃତ ପ୍ରାଣସ୍ପନ୍ଦନ ଓ ଆତ୍ମିକ ନିର୍ଯ୍ୟାସ ଉନ୍ମୀଳିତ ରହିଥିଲା ପଲ୍ଲୀରେ । ଆମର ସଂସ୍କୃତି ଓ ପରଂପରା, [illegible] ଜାତିର ଅଭ୍ୟୁଦୟ ଓ ସ୍ୱାତନ୍ତ୍ର୍ୟର ଅସଲ ପରିଚୟ ପଲ୍ଲୀର ପରିପୂତ ଜୀବନଚର୍ଯ୍ୟା ହିଁ ଧରି ରଖିଥିଲା । କିନ୍ତୁ ପାଶ୍ଚାତ୍ୟ କାବ୍ୟରୁଚି ଓ ଭାବଚେତନା ପ୍ରଭାବିତ ଓଡ଼ିଆ ସାହିତ୍ୟର ଆଧୁନିକ ପର୍ବରେ 'ପଲ୍ଲୀ'ର ମନ୍ମୟତା ଓ ପ୍ରାଣସ୍ରୋତ ହୋଇପଡ଼ିଥିଲା ଅବହେଳିତ ।

ଏହି ସନ୍ଧିକ୍ଷଣରେ ନନ୍ଦକିଶୋରଙ୍କର ଆବିର୍ଭାବ ହୁଏ ଓଡ଼ିଆ ସାହିତ୍ୟରେ । ଓଡ଼ିଶାର ପଲ୍ଲୀ ପ୍ରକୃତି ଓ ପଲ୍ଲୀଜୀବନକୁ ସେ ଯେପରି ପ୍ରାଣବନ୍ତ, ମୌଳିକ ତଥା କଳାତ୍ମକ ଭାବରେ ତାଙ୍କ କବିତାବଳୀରେ ଉପସ୍ଥାପିତ କଲେ ତାହା ବାସ୍ତବରେ ଓଡ଼ିଶାର ଜାତୀୟ ସାରସ୍ୱତ ପ୍ରବାହରେ ଏକ ଉଲ୍ଲେଖଯୋଗ୍ୟ ଐତିହାସିକ ଘଟଣା । ପୁଣି ନନ୍ଦକିଶୋରଙ୍କ ସାରସ୍ୱତ ପ୍ରତିଭା କେବଳ ପଲ୍ଲୀର ଆୟତନ ମଧ୍ୟରେ ସୀମିତ ରହି ନଥିଲା, ତାଙ୍କର ଜାତୀୟଚେତନାର ଗଭୀର ପ୍ରତିବଦ୍ଧତା ତଥା ସମାଜ ସଚେତନ, ସଂସ୍କାରବାଦୀ କାବ୍ୟମାନସର ବୈପ୍ଲବିକ ବେସାଲିସ୍ ମୂଲ୍ୟବୋଧ ଆଉ ଏକ ବୃହତ ପରିଧି ମଧ୍ୟରେ ଆପଣାର ଔଜ୍ଜ୍ୱଲ୍ୟ ପ୍ରକଟିତ କରିଥିଲା ।

ପଲ୍ଲୀକବିଙ୍କ ସାହିତ୍ୟିକ କୃତିତ୍ୱର ଆକଳନ ଓ ମୂଲ୍ୟାୟନ ଲାଗି ଅତୀତରେ ବହୁ ଗବେଷକ ଓ ସାହିତ୍ୟାଲୋଚକ ପ୍ରୟାସ କରିଛନ୍ତି ତଥା ଏବେ ମଧ୍ୟ ଏହି ସାରସ୍ୱତ କର୍ତ୍ତବ୍ୟ ସଂପାଦନର ପ୍ରକ୍ରିୟା ଅବ୍ୟାହତ ରହିଛି । ଏହି ଗ୍ରନ୍ଥଟିରେ ସନ୍ନିବେଶିତ ଆଲୋଚନା ଗୁଡ଼ିକରେ ସଂପୃକ୍ତ ସମୀକ୍ଷକମାନଙ୍କର ଗଭୀର ମନନଶୀଳତା ଓ ଅନ୍ତରଙ୍ଗ ଅନୁଶୀଳନ ପ୍ରତିଫଳିତ । ଏଥି ର ଆଲୋଚକମାନଙ୍କ ମଧ୍ୟରେ ଅତ୍ୟନ୍ତ ପ୍ରବୀଣ ଗବେଷକ ଓ ସାହିତ୍ୟ ସମାଲୋଚକ ମାନଙ୍କ ସହିତ ଅପେକ୍ଷାକୃତ ଯୁବ ସମାଲୋଚକମାନେ ମଧ ଅନ୍ତର୍ଭୁକ୍ତ । ପଲ୍ଲୀକବିଙ୍କ ସାରସ୍ୱତ ପରିଧିକୁ ଭିନ୍ନ ଭିନ୍ନ ମୌଳିକ ଦୃଷ୍ଟିକୋଣରୁ ଆକଳନ କରିବାର ପ୍ରବୃତ୍ତି ସଂକଳିତ ରଚନା ଗୁଡ଼ିକରୁ ଉପଲବ୍ଧ ହେବ ।

ନନ୍ଦକିଶୋରଙ୍କ 'ଗଛ ଓ କାଠୁରିଆ ଗୀତ' ତାଙ୍କର 'ନାନା ବାୟା ଗୀତ' ସଂକଳନର

ଅନ୍ୟତମ କବିତା । ଏହାର ଏକ ଅନ୍ତରଙ୍ଗ ଆଲୋଚନା ମାଧ୍ୟମରେ ବିଶିଷ୍ଟ ଗବେଷକ ତଥା ନନ୍ଦକିଶୋର ସାହିତ୍ୟ-କୃତିର ଗବେଷଣାତ୍ମକ ଆଲୋଚନାର ଯଥାର୍ଥ ଅଗ୍ରଦୂତ ଡଃ ନଟବର ସାମନ୍ତରାୟ ପଲ୍ଲୀକବିଙ୍କ ଜୀବନଦର୍ଶନ ଓ ପ୍ରକୃତିକୈନ୍ଦ୍ରିକ ଭାବାବେଗର ଯଥାର୍ଥ ଆକଳନ କରିପାରିଛନ୍ତି । ଗଛଟି ସହିତ କବିଙ୍କ ପରିବାରର ଏକାଧିକ ପୀଢ଼ିର ରହିଛି ଏକାନ୍ତ ଅନ୍ତରଙ୍ଗ ସମ୍ବନ୍ଧ । ତେଣୁ ସେ ଗଛ ସହିତ ନିଜର ଏକ ପରିପୂର୍ଣ୍ଣ ଅଭିନ୍ନତାବୋଧ କବିଙ୍କ ଆବେଗକୁ କିଭଳି ଆଛନ୍ନ କରିଛି ତା'ର ଏକ ସଂପ୍ରସାରିତ ବିଶ୍ଳେଷଣ କରିଛନ୍ତି ଡଃ ସାମନ୍ତରାୟ । ବିଶିଷ୍ଟ କବି ଓ ସମାଲୋଚକ ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ପଲ୍ଲୀକବି-ସାହିତ୍ୟଜଗତର ନିବିଡ଼ ଅନୁଶୀଳନ ପୂର୍ବକ ତାଙ୍କ ରଚାନବଳୀର ପ୍ରବୃତ୍ତି ମଧ୍ୟରେ ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ କାବ୍ୟଚେତନାର ଏକ ସୁସମନ୍ୱିତ ଧାରା ଆବିଷ୍କାର କରିଛନ୍ତି । ମାନବ ପ୍ରୀତି ଓ ପ୍ରକୃତି ପ୍ରୀତି ପଲ୍ଲୀକବିଙ୍କ କାବ୍ୟସୃଷ୍ଟିର ମୁଖ୍ୟ ବିଭାବ ବୋଲି ସେ ପ୍ରତିପାଦିତ କରିଛନ୍ତି । ନନ୍ଦକିଶୋରଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରସିଦ୍ଧତମ ଗୀତିକବି ଭାବରେ ମଧ୍ୟ ସେ ଯଥାର୍ଥରେ ଆଖ୍ୟାୟିତ କରିଛନ୍ତି ।

ନନ୍ଦକିଶୋରଙ୍କ 'ପଲ୍ଲୀଚିତ୍ର' କବିତା ସଂକଳନର ଗଭୀର ଅନୁଶୀଳନ କରି ଡଃ ବାସୁଦେବ ସାହୁ ଏଥିରେ ପଲ୍ଲୀର ଯେଉଁ ବ୍ୟାପକ ଓ ଅନ୍ତରଙ୍ଗ ଛବି ପ୍ରତିଫଳିତ ହୋଇଛି ତାହାକୁ ଆଧାର କରି ସଂକଳନଟିକୁ ''ଉତ୍କଳୀୟ-ପଲ୍ଲୀ-ବିଶ୍ୱକୋଷ''ର ଆଖ୍ୟା ଦେବାକୁ ଚାହିଁଛନ୍ତି । ପଲ୍ଲୀର ଆତ୍ମା ଓ ଶରୀରକୁ ପଲ୍ଲୀକବି ଯେଉଁଭଳି ସାମଗ୍ରିକ ଭାବେ ଆପଣା କବିପ୍ରାଣରେ ଅବତରଣ କରାଇ ପାରିଛନ୍ତି ତାହା ଯେ ବିସ୍ମୟକର, ସେ କଥା ଡଃ ସାହୁ ଦର୍ଶାଇଛନ୍ତି । ନନ୍ଦକିଶୋରଙ୍କ ଏକମାତ୍ର ଉପନ୍ୟାସ 'କନକଲତା'ରେ ପ୍ରତିଫଳିତ କଥାଶିଳ୍ପର ଉତ୍କର୍ଷ ଆଲୋଚନାକରି ଏହି ଉପନ୍ୟାସ ରଚନାର ପ୍ରେରଣା ଓ ପୃଷ୍ଠଭୂମି ଉପରେ ଡଃ ବିଭୂତି ପଟ୍ଟନାୟକ ଆଲୋଚନା କରିଛନ୍ତି । ଡଃ ପଟ୍ଟନାୟକ ଯଥାର୍ଥରେ ମତ ଦେଇଛନ୍ତି ଯେ 'ଭାମାଭୂୟାଁ' 'ମଳାଜହ୍ନ' ଓ 'ମନେମନେ' ଭଳି ଏକମାତ୍ର ଉପନ୍ୟାସମାନ ଲେଖି ଯଥାକ୍ରମେ ଗୋପାଳ ବଲ୍ଲଭ, ଉପେନ୍ଦ୍ର କିଶୋର ଓ ବୈଷ୍ଣବଚରଣ ଯେଭଳି ସ୍ମରଣୀୟ ହୋଇଛନ୍ତି, ଏକମାତ୍ର 'କନକଲତା' ଉପନ୍ୟାସ ଲେଖି ନନ୍ଦକିଶୋର ସେହିଭଳି ଓଡ଼ିଆ କଥା ସାହିତ୍ୟରେ ଅବିସ୍ମରଣୀୟ ।

ପ୍ରଖ୍ୟାତ ଆମେରିକୀୟ କବି ରବର୍ଟ ଫ୍ରଷ୍ଟ ଓ ପଲ୍ଲୀକବି ନନ୍ଦକିଶୋର ଥିଲେ ସମସାମୟିକ । ଭୌଗୋଳିକ ଦୂରତାର ବିପୁଳତା ସତ୍ତ୍ୱେ ଏ ଦୁଇ କବିଙ୍କ କବିତାରେ ଗ୍ରାମ୍ୟ ଜୀବନ, ଭଗବତ୍ ବିଶ୍ୱାସ ଓ ପ୍ରେମ ଭାବନା କିଭଳି ନିବିଡ଼ ସାଦୃଶ୍ୟ ବହନ କରିଛି ତାହା ଡଃ ବନମାଳୀ ବାରିକ ସଦ୍ଦୃଷ୍ଟାନ୍ତ ନିଜ ପ୍ରବନ୍ଧରେ ଦର୍ଶାଇଛନ୍ତି । ନନ୍ଦକିଶୋରଙ୍କ କବିତାର ଜୀବନବାଦୀ ଭାବଭୂମି ଓ ଭାବୁକତାପୂର୍ଣ୍ଣ ହୃଦୟାବେଗର ଆକଳନ କରି ଡଃ ପ୍ରତିଭା ଶତପଥୀ ବର୍ଷା ଓ ବିଷାଦର କବି ଭାବରେ ତାଙ୍କର ପରିଚୟ ଉନ୍ମୋଚିତ କରିଛନ୍ତି । ବିଶେଷତଃ 'ନିର୍ଝରିଣୀ'ର ଏକାଧିକ କବିତାର ଆଧାରରେ କବିଙ୍କ କାବ୍ୟିକ ବିଷାଦବୋଧ ଭିତରେ ଲୁଚି ରହିଥିବା ଆନନ୍ଦର ଅଭୀପ୍ସା ଓ କଳାତ୍ମକ ସୌନ୍ଦର୍ଯ୍ୟକୁ ସେ ଉଦ୍‌ଘାଟିତ କରିଛନ୍ତି ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଲାଗି ଯେଉଁ ଐତିହାସିକ ଜନଜାଗରଣ ୧୯୦୩ ମସିହାରେ ପ୍ରଥମେ ଗଂଜାମ ସମ୍ମିଳନୀ ଓ ପରେ ଉତ୍କଳ ସମ୍ମିଳନୀ ମାଧ୍ୟମରେ ହୋଇଥିଲା ସେଥିରେ ନନ୍ଦକିଶୋରଙ୍କ ତାତ୍ପର୍ଯ୍ୟପୂର୍ଣ୍ଣ ଭୂମିକାର ପୃଷ୍ଠା ଉନ୍ମୀଳନ କରିଛନ୍ତି ଡଃ ଗୋପାଳକୃଷ୍ଣ ଶ୍ରୀଚନ୍ଦନ । ନନ୍ଦକିଶୋରଙ୍କ 'ଜନ୍ମଭୂମି' (ଦ୍ୱିତୀୟ ଭାଗ) କବିତାଗ୍ରନ୍ଥର ପ୍ରାୟ ସବୁଗୁଡ଼ିକ କବିତାରେ ଯେ ଜଣେ ଜାତୀୟତାବାଦୀ ସ୍ୱଦେଶ-ବିଦଗ୍ଧ କବିଙ୍କର ସ୍ପଷ୍ଟସ୍ୱର ଅନୁରଣିତ ହୋଇଛି ତାହା ଉଲ୍ଲେଖକରି ଆଲୋଚକ ପଲ୍ଲୀପ୍ରାଣ କବିଙ୍କର ଜାତିପ୍ରାଣତାର ଅନ୍ୟତମ ବଳିଷ୍ଠ ଦିଗଟିକୁ ଆଲୋକିତ କରିଛନ୍ତି । ପଲ୍ଲୀର ଜୀବନ୍ତ ଚିତ୍ର ସହିତ ଜାତିପ୍ରୀତି, ବିଶ୍ୱପ୍ରାଣତା, ଶୁଦ୍ଧପ୍ରେମଭାବନା, ଦେହୋତ୍ତର ଚେତନା ତଥା ରୋମାଣ୍ଟିକ୍ ଭାବପ୍ରବଣତା ପଲ୍ଲୀକବିଙ୍କ କବିତାକୁ କିଭଳି କାଳଜୟୀ ସୃଜନ ସ୍ୱୀକୃତି ଆଣିଦେଇଛି ତାହାର ମାର୍ମିକ ଆଲୋଚନା କରିଛନ୍ତି ଡଃ ସଂଘମିତ୍ରା ମିଶ୍ର ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଇଂରେଜ ଶାସନାଧୀନ ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତିକ ସଂସ୍କାରରୁ ଓଡ଼ିଶାରେ ଯେଉଁ ପରିବର୍ତ୍ତନ ବା କାଳାନ୍ତର ଦୃଷ୍ଟିଗୋଚର ହୋଇଥିଲା ତାହାର ବୈଶିଷ୍ଟ୍ୟ ଓ ତାତ୍ପର୍ଯ୍ୟ ନନ୍ଦକିଶୋର ଯେ ସମସାମୟିକ ସାହିତ୍ୟକଙ୍କ ମଧ୍ୟରେ ସବୁଠାରୁ ଘନିଷ୍ଠ ଭାବେ ଉପଲବ୍ଧି କରିଥିଲେ ତାହା ତାଙ୍କର କବିତା, ଉପନ୍ୟାସ ଓ ପ୍ରବନ୍ଧ ଗୁଡ଼ିକରେ କିଭଳି ପ୍ରତିଫଳିତ ହୋଇଛି ସେକଥା ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ତାଙ୍କ ମନନଶୀଳ ଆଲୋଚନାରେ ଦର୍ଶାଇଛନ୍ତି । ଆମର ସାମାଜିକ ପରଂପରାରେ ପୁରୁଷାଧିପତ୍ୟର ଯୂପକାଠରେ ନାରୀର ସମ୍ମାନ,

ସ୍ୱାଧୀନତା ଓ ଅଧିକାର ଯୁଗେ ଯୁଗେ ନିଷ୍ଠୁର ଭାବେ ବଳିପଡ଼ି ଆସିଛି । ଚିରଲାଞ୍ଛିତା ଓ ଉତ୍ପୀଡ଼ିତା ମାତୃଜାତି ର ଅକୁହା ମର୍ମବେଦନା ନନ୍ଦକିଶୋର କିଭଳି ପ୍ରାଣେ ପ୍ରାଣେ ଅନୁଭବ କରିଥିଲେ ଏବଂ ତାଙ୍କ ରଚନାବଳୀରେ ସେହି ସମ୍ବେଦନପ୍ରବଣତା କିଭଳି କରୁଣ ଓ ପ୍ରଭାବଶାଳୀ ଭାବେ ରୂପାୟିତ ହୋଇଛି ତାହାର ଗବେଷଣାତ୍ମକ ସଂଶ୍ଲେଷଣ କରିଛନ୍ତି ସ୍ୱର୍ଗତ ଡଃ ଶରତ ଚନ୍ଦ୍ର ନାୟକ ।

ଡଃ କୈଳାସ ଚନ୍ଦ୍ର ଦାଶଙ୍କ ନିବନ୍ଧରେ ପଲ୍ଲୀକବିଙ୍କ ବୃତ୍ତି ଓ ସାମାଜିକ ଜୀବନଚର୍ଯ୍ୟାର ବହୁ ଜଟିଳତା ମଧ୍ୟରେ ସୁଦ୍ଧା କିପରି ତାଙ୍କର ପଲ୍ଲୀପ୍ରାଣ କବିପ୍ରତିଭା ଆପଣାର କମନୀୟ ସୁଷମା ପ୍ରକଟିତ କରିଥିଲା ତା'ର ଚିତ୍ର ଉପଲବ୍ଧ । ନନ୍ଦକିଶୋରଙ୍କ କବିତାରେ ବିଭିନ୍ନ ଋତୁର ବର୍ଣ୍ଣନାରେ ଯେଉଁ ଅସାଧାରଣ ଚେତନାର ସମନ୍ୱୟ ପାଠକକୁ ଆଲୋଡ଼ିତ କରେ ତାହାର ସତର୍କ ଅନୁସଂଧାନ କରିଛନ୍ତି ଆଚାର୍ଯ୍ୟ ଭାବାନନ୍ଦ (ଡଃ ଭାବଗ୍ରାହୀ ମିଶ୍ର) । ଉତ୍କଳୀୟ ପଲ୍ଲୀପ୍ରକୃତି ନନ୍ଦକିଶୋରଙ୍କ ଲେଖନୀରେ କିଭଳି ବହୁ ବିଚିତ୍ର ବର୍ଣ୍ଣବିନ୍ୟାସ ମଧ୍ୟରେ ଜୀବନ୍ତ ଭାବରେ ଉତ୍କୀର୍ଣ୍ଣ ହୋଇଛି ତାହା ଡଃ ବସନ୍ତ କୁମାର ପଣ୍ଡା ତାଙ୍କ ଆଲୋଚନାରେ ସଦୃଷ୍ଟାନ୍ତ ବିସ୍ତୃତ ଭାବେ ବିଚାର କରିଛନ୍ତି । ଶିଶୁ ସାହିତ୍ୟର ଅଦ୍ୱିତୀୟ ସ୍ରଷ୍ଟା ଭାବେ ନନ୍ଦକିଶୋରଙ୍କୁ ଆଖ୍ୟାୟିତ କରି ଡଃ ହରପ୍ରସାଦ ପରିଛା ପଟନାୟକ ତାଙ୍କ ପ୍ରବନ୍ଧରେ ଶିଶୁମାନଙ୍କୁ ଆକୃଷ୍ଟ ଓ ମୁଗ୍ଧ କଲାଭଳି ସମସ୍ତ ଉପାଦାନ ଓ ଆୟତନ କିଭଳି ତାଙ୍କ କବିତାରେ ରୂପାୟିତ ହୋଇଛି ତାହା ଦର୍ଶାଇଛନ୍ତି । ଖ୍ୟାତନାମା ଇଂରେଜ କବି ଗୋଲ୍ଡ୍‌ସ୍ମିଥ୍‌ଙ୍କ ସହ ପଲ୍ଲୀକବିଙ୍କୁ ସେ ଯଥାର୍ଥ ଭାବେ ତୁଳନା କରିଛନ୍ତି ଏବଂ କବିଙ୍କୁ ପଲ୍ଲୀଚେତନାମଗ୍ନ ଭାବୁକ, ଦୂରଦ୍ରଷ୍ଟା ଓ କଳ୍ପନାବିଳାସୀ ଭାବେ ଅଭିହିତ କରିଛନ୍ତି ।

ନନ୍ଦକିଶୋରଙ୍କ କାବ୍ୟଦୃଷ୍ଟି କିଭଳି ପଲ୍ଲୀପ୍ରକୃତି ଓ ପଲ୍ଲୀଜୀବନର ବିଭିନ୍ନ ଉଲ୍ଲେଖଯୋଗ୍ୟ ଦିଗନ୍ତର ସଂଧାନ ଦେଇଥିଲା ଏବଂ ପଲ୍ଲୀଜୀବନାଲେଖ୍ୟର ଏକ ବିସ୍ତୃତ ପୃଷ୍ଠଭୂମି ପ୍ରସ୍ତୁତ କରିଥିଲା ତାହା ଡଃ ବିଜୟ କୁମାର ମହାନ୍ତି 'ନିର୍ଝରଣୀ'ର ନିବିଡ଼ ଅନୁଶୀଳନ ଆଧାରରେ ଅଭିବ୍ୟକ୍ତ କରିଛନ୍ତି । ନନ୍ଦକିଶୋରଙ୍କ କବିତାରୁ ମାନବିକତାର ଗଭୀର ଓ ଅକୃତ୍ରିମ ସ୍ୱରର ସନ୍ଧାନ କରିଛନ୍ତି ଶ୍ରୀ ସୌରୀବନ୍ଧୁ କର । କବିଙ୍କର ମୁକ୍ତିକାମୀ ତଥା ପ୍ରଗତିପିପାସୁ ମାନବିକ ଚେତନା କିଭଳି ତାଙ୍କ କବିତାରେ ଏକ ସାମାଜିକ ଦିଗ୍‌ଦର୍ଶନର ଦ୍ୱାର ଉନ୍ମୁକ୍ତ କରିଛି ଆଲୋଚକ ସେହି ପରିଧି ଉପରେ ଆଲୋକପାତ କରିଛନ୍ତି । ପଲ୍ଲୀକବିଙ୍କ ପଲ୍ଲୀଚେତନାରେ ଆତ୍ମୀୟପଣକୁ ଏକ

ଆବେଗପୂର୍ଣ୍ଣ ରୀତିରେ ସଂଶ୍ଳେଷଣ କରିଛନ୍ତି ଡଃ ପ୍ରଦୀପ କୁମାର ଧଳ । ନନ୍ଦକିଶୋରଙ୍କ ସୁପରିଚିତ ଲୋକଗୀତି ଆଧାରିତ ପଲ୍ଲୀକବିତା "ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ି ଦେଇ ପର..."କୁ ଆଧାର କରି ଏକ କବିତାୟିତ ଆଙ୍ଗିକରେ ପରିବେଷିତ ହୋଇଛି ଡଃ ଧଳଙ୍କ ଆଲେଖ୍ୟ ।

ସଂକଳିତ ଆଲୋଚନା ଗୁଡ଼ିକ ମଧ୍ୟରୁ ଅଧିକାଂଶ ୧୯୯୨ ମସିହାରୁ ୧୯୯୬ ମସିହା ମଧ୍ୟରେ ପଲ୍ଲୀକବି ଜୟନ୍ତୀ ଅବସରରେ ଦୈନିକ ସମ୍ବାଦପତ୍ର 'ପ୍ରଗତିବାଦୀ'ର ସ୍ୱତନ୍ତ୍ର କ୍ରୋଡ଼ପତ୍ରରେ ପ୍ରକାଶିତ । ଗୋଟିଏ ଆଲୋଚନା ସମ୍ବଲପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶିତ 'ସପ୍ତର୍ଷି' ସାହିତ୍ୟ ପତ୍ରିକାରୁ ଗୃହୀତ । ଚାରୋଟି ଆଲୋଚନା ସ୍ୱତନ୍ତ୍ର ଭାବେ ଏହି ସଂକଳନ ଲାଗି ପ୍ରସ୍ତୁତ । ସେ ସବୁର ସୂଚନା 'ପରିଶିଷ୍ଟ'ରେ ଯଥାରୀତି ସୂଚିତ ହୋଇଛି । ସଂପୃକ୍ତ ସମସ୍ତ ଆଲୋଚକ ତଥା ଉପରୋକ୍ତ ଦୁଇଟି ପତ୍ରିକାର ସଂପାଦକଙ୍କ ପ୍ରତି ଏହି ଅବସରରେ ମୋର କୃତଜ୍ଞତା ଜ୍ଞାପନ କରୁଛି ।

ସଂପାଦକୀୟ ଆଦର୍ଶ ଆଚରଣ ବିଧି ଦୃଷ୍ଟିରୁ ଯେତେ ନୁହେଁ, ସଂକଳନଟିର ନିର୍ଦ୍ଧାରିତ କଳେବରଗତ ସୀମାଲଙ୍ଘନର ଆଶଂକା ଦୃଷ୍ଟିରୁ ନନ୍ଦକିଶୋର ସାହିତ୍ୟ ଆଧାରିତ ମୋ ନିଜର କୌଣସି ରଚନା ଏହି ସଂକଳନରେ ମୁଁ ସ୍ଥାନିତ କରି ନାହିଁ । ଏବଂ ଏକ ଦୀର୍ଘ ମୁଖବଂଧ ରଚନାରୁ ମୋର ନିବୃତ୍ତ ରହିବା ମୂଳରେ ମଧ୍ୟ ଉପର୍ଯ୍ୟୁକ୍ତ ପରିସ୍ଥିତି ଏକତମ କାରଣ ଅଟେ । ତାହାର ଅନ୍ୟ କାରଣଟି ହେଉଛି ଏହି ଯେ କୌଣସି ବିଶିଷ୍ଟ ସାହିତ୍ୟିକଙ୍କ କୃତି ଓ କୃତିତ୍ୱର ବିଭିନ୍ନ ବିଭାବକୁ ନେଇ ପ୍ରତିଷ୍ଠିତ ଆଲୋଚକମାନଙ୍କର ବୀକ୍ଷାଭିତ୍ତିକ ବହୁଲେଖାର ଏକ ସଂକଳନରେ ମୁଖବଂଧ ନାମରେ ଆହୁରି ଏକ ମୂଲ୍ୟାୟନମୂଳକ ଦୀର୍ଘ ଲେଖା ନିଶ୍ଚୟ ଅନାବଶ୍ୟକ । କବିତା ବା ଗଳ୍ପ ସଂକଳନ ପରି ସର୍ଜନଶୀଳ ରଚନାର ଏକ ସଂଗ୍ରହର ମୁଖବଂଧରେ ହୁଏତ ସେଗୁଡ଼ିକର ଆକଳନ ମୂଳକ ଏକ ଦୀର୍ଘ ଉଚ୍ଚାରଣ ସ୍ପୃହଣୀୟ ହୁଏ । ବସ୍ତୁତଃ ଏହି ସଂକଳନର କଳେବରଗତ ସୀମିତତା ଦୃଷ୍ଟିରୁ ସଂକଳିତ ପ୍ରାୟ ସମସ୍ତ ପ୍ରବନ୍ଧର ଆକାରଗତ କ୍ଷୁଦ୍ରତା ଏକ ଆଶିର୍ବାଦ ସ୍ୱରୂପ ସାବ୍ୟସ୍ତ ହୋଇଛି । କାରଣ ତା'ଦ୍ୱାରା ଏହି କ୍ଷୁଦ୍ର ପୁସ୍ତକଟିରେ ଏତେ ଗୁଡ଼ିଏ ସଂରକ୍ଷଣୀୟ ରଚନା ଏକତ୍ରିତ କରିବା ସମ୍ଭବପର ହୋଇପାରିଛି ।

ପଲ୍ଲୀକବିଙ୍କ ବିପୁଳ ସୃଜନ ପରିଧିର ଯଥାର୍ଥ ଆକଳନ ଏକ ଆୟାସସାଧ୍ୟ ବ୍ୟାପାର ।

ଏହି ସଂକଳନରେ ସ୍ଥାନିତ ରଚନା ସମୂହର ଲେଖକଗଣ ଗଭୀର ଅଧ୍ୟବସାୟ ଓ ଉତ୍ସର୍ଗୀକୃତତାର ସହ ନନ୍ଦକିଶୋରଙ୍କ ସାହିତ୍ୟିକ ଦିଗ୍‌ବଳୟର ପ୍ରମୁଖ ସୌନ୍ଦର୍ଯ୍ୟ ଓ ବୈଶିଷ୍ଟ୍ୟ ଉଦ୍‌ଘାଟନର ପ୍ରୟାସ ଯେ କରିଛନ୍ତି ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶା ସାହିତ୍ୟ ଏକାଡେମୀ ଓ ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍ ଏହି ସଂକଳନର ସଂପାଦନା ପରି ଏକ ତାତ୍ପର୍ଯ୍ୟପୂର୍ଣ୍ଣ ସାରସ୍ୱତ କାର୍ଯ୍ୟ ସଂପନ୍ନ କରିବାକୁ ମୋତେ ସୁଯୋଗ ଦେଇଥିବାରୁ ମୁଁ ଉଭୟ କର୍ତ୍ତୃପକ୍ଷଙ୍କ ନିକଟରେ କୃତଜ୍ଞ । ନିବନ୍ଧ ଗୁଡ଼ିକର ଲେଖକଗଣ ସେମାନଙ୍କର ଲେଖାକୁ ଏହି ସଂକଳନରେ ଅନ୍ତର୍ଭୁକ୍ତ କରିବା ଲାଗି ଅନୁମତି ପ୍ରଦାନ କରି ମୋତେ ଅନୁଗୃହୀତ କରିଛନ୍ତି ।

ସ୍ୱଳ୍ପ ସମୟ ମଧ୍ୟରେ ଏହି ସଂକଳନର ପ୍ରସ୍ତୁତିପର୍ବ ସମାପିତ ହୋଇଛି । ଏହି ଦୃଷ୍ଟିରୁ ଏହାର ବିଭିନ୍ନ ସୀମିତତାର ସମ୍ଭାବନାକୁ ଅସ୍ୱୀକାର କରିହେବ ନାହିଁ । ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ ଏଭଳି ଏକ ସଂକଳନର ପ୍ରକାଶନ ଲାଗି ଆଗ୍ରହ ପ୍ରକାଶ କରି ଏକ ମହାର୍ଘ ଓ ପ୍ରଶଂସାର୍ହ କାର୍ଯ୍ୟ ଯେ କରିଛନ୍ତି ତାହାର ଉଲ୍ଲେଖ ଅନାବଶ୍ୟକ ।ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍‌ର ସଭାପତି ଆଚାର୍ଯ୍ୟ ଭାବାନନ୍ଦ (ଡଃ ଭାବଗ୍ରାହୀ ମିଶ୍ର), ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଚିବ ଡଃ ହରପ୍ରସାଦ ପରିଛା ପଟନାୟକ, ପଲ୍ଲୀକବିଙ୍କ ସୁଯୋଗ୍ୟ ଦାୟାଦ ଶ୍ରୀ ପ୍ରଦ୍ୟୁମ୍ନ କିଶୋର ବଳ ଓ ଗବେଷକ ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ଏହି ସଂକଳନର ପ୍ରସ୍ତୁତି କାର୍ଯ୍ୟରେ ମୋତେ ଯେଉଁ ନିରବଚ୍ଛିନ୍ନ ସହଯୋଗର ସୌଜନ୍ୟ ଅର୍ପଣ କରିଛନ୍ତି ତାହା କେବଳ ଋଣ ସ୍ୱୀକାରର ସାମଗ୍ରୀ ନୁହେଁ, ପରନ୍ତୁ ସେସବୁ ସହାୟତା ବିନା ମୋର ଯଥାସମୟରେ ଦାୟିତ୍ୱ ସଂପାଦନ ପ୍ରାୟ ଅସମ୍ଭବ ହୋଇ ପଡ଼ିଥାନ୍ତା ।

ଏହି ସଂକଳନଟି ଓଡ଼ିଆ ସାହିତ୍ୟର ଛାତ୍ର, ଅଧ୍ୟାପକ, ଗବେଷକ, ସମାଲୋଚକ ଓ ପାଠକଙ୍କ ଲାଗି ସଂରକ୍ଷଣୀୟ ବିବେଚିତ ହେଲେ ଶ୍ରମ ସାର୍ଥକ ହେବାର ଆହ୍ଲାଦ ମିଳିବ । □

□ ପ୍ରସନ୍ନ କୁମାର ମହାନ୍ତି

# 'ଗଛ ଓ କାଠୁରିଆ' ଗୀତ : ଏକ ଅନୁଶୀଳନ

## ▫ ନଟବର ସାମନ୍ତରାୟ

ପଲ୍ଲୀକବି ନନ୍ଦକିଶୋର ବଳଙ୍କ 'ନାନାବାୟା ଗୀତ' ବା ଶିଶୁରଂଜନ ପୁସ୍ତକ 'ଉତ୍କଳ ସାହିତ୍ୟ' ପତ୍ରିକା ୧୯ ଭାଗ ୬ଷ୍ଠ ସଂଖ୍ୟା (୧୯୧୫ ମସିହା ସେପ୍‌ଟେମ୍ବର ମାସ) 'ସାହିତ୍ୟ ସମ୍ବାଦ'ରେ ଉଲ୍ଲିଖିତ । ଉକ୍ତ କ୍ଷୁଦ୍ର ପୁସ୍ତକଟି ତଦାନିନ୍ତନ ଓଡ଼ିଶା ବିଭାଗ ସ୍କୁଲ ସମୂହର ଇନ୍ସପେକ୍‌ଟର୍ ଶ୍ରୀଯୁକ୍ତ ଡବ୍‌ଲ୍ୟୁ ଭି. ଡିଉକ୍‌ଙ୍କୁ (W.V. Duke) ଉତ୍ସର୍ଗ କରାଯାଇଥିଲା; ଯେଉଁଥିରେ କବି ଲେଖିଥିଲେ -In token of the author's respect and esteem for him for his devotion to duty and sympathy for the Oriya Literature.ଏଇ ପୁସ୍ତକର ପ୍ରଥମ ଗୀତ 'କୁଜି କାଉ'ରେ ଅଛି- ''ପାର୍ବତୀ ଦେଈ ଗୋ ପାର୍ବତୀ ଦେଈ । ବାରତା ଦିଅରେ ସଭିଙ୍କୁ ନେଇ ।'' ଫଳରେ ପାର୍ବତୀ ଦେଈ (ଜନ୍ମ ୧୯୦୬ ମସିହା) କହୁଛନ୍ତି, ''ମୋ ବାପା ଅଛନ୍ତି ବହୁତ ଦୂରେ । ଉଡ଼ିଯାଅ କାଉ ସମ୍ବଲପୁରେ ।'' ପାର୍ବତୀ ଦେଈ ହେଉଛନ୍ତି କବିଙ୍କ ଜ୍ୟେଷ୍ଠା କନ୍ୟା ଓ ବଳ କବି ୧୯୧୧ରେ ସମ୍ବଲପୁରରେ ଚାକିରି କରୁଥିଲେ । ପୁନର୍ବାର ସେଇ ପୁସ୍ତକର 'କକଛୁଆ' ଗୀତରେ ଅଛି, ''ତୁନି ହୋଇ କୃଷ୍ଣ କହନ୍ତି ମାତାଙ୍କୁ କକଛୁଆ କି କରିବ ।'' ଏଠାରେ କୃଷ୍ଣ ହେଉଛନ୍ତି କବିଙ୍କ ଜ୍ୟେଷ୍ଠ ପୁତ୍ର କୃଷ୍ଣକିଶୋର ବଳ (ଜନ୍ମ ୧୯୦୯) ଓ ମାତା କୋକିଳ ଦେବୀ । ପୁନଶ୍ଚ ଏ ପୁସ୍ତକର 'ନିଦ ମାଉସୀ' ଗୀତରେ ଅଛି - ''ନିଦ ମାଉସୀ ନିଦ ମାଉସୀ ହେମ ଘରକୁ ତୁ ଆ ଆ ।'' ଏଠାରେ ହେମ ହେଉଛନ୍ତି କବିଙ୍କ ଦ୍ୱିତୀୟ ପୁତ୍ର ହେମନ୍ତ କିଶୋର ବଳ (ଜନ୍ମ ୧୯୧୨ ମସିହା ) । ଏସବୁ ଆଲୋଚନା କଲେ ଜଣାଯାଏ ଯେ, 'ନାନା ବାୟା ଗୀତ' ୧୯୧୫ ବେଳକୁ ରଚିତ ହୋଇଥିଲା, ଯେତେବେଳେ ବଳ କବିଙ୍କି ୪୦ ବର୍ଷ ବୟସ । କାରଣ ତାଙ୍କର ଜନ୍ମ ସମୟ ହେଉଛି ୨୨ ତାରିଖ ଡ଼ିସେମ୍ବର ୧୮୭୫ ମସିହା । 'ଗଛ ଓ କାଠୁରିଆ' ଗୀତ ହେଉଛି ଆଲୋଚ୍ୟ 'ନାନା ବାୟା ଗୀତ' ର

ଅନ୍ୟତମ ଗୀତ, ଯାହାର ପ୍ରକୃଷ୍ଟ ଅବବୋଧ ପାଇଁ ବର୍ତ୍ତମାନର ପ୍ରବନ୍ଧ ପ୍ରସ୍ତୁତ କରାଯାଇଅଛି ।

ଆଲୋଚ୍ୟ ଗୀତର ଆତ୍ମିକ ସ୍ୱରୂପ ଉପଲବ୍ଧି ପାଇଁ ୧୯୦୮ ମସିହା ଜୁଲାଇ ମାସରେ କବିଙ୍କ ଲିଖିତ 'ପଲ୍ଲୀଚିତ୍ର' (ଦ୍ୱିତୀୟ ଭାଗ)ରୁ ନିମ୍ନ ଉଦ୍ଧୃତିଟି ଅନୁଧ୍ୟାନ କରନ୍ତୁ :

'କିନ୍ତୁ ଦୟାବହି କଳ୍ପନା ସୁନ୍ଦରୀ ଦେଇଛନ୍ତି ମୋତେ ବର
ସୁନ୍ଦର ଶୈଶବ ଛବିରାଜି ଦୂରୁ ଦିଶଇ ସୁନ୍ଦରତର ।
ଅଜ୍ଞାତେ ଭୁଞ୍ଜିଲି ସେ ସୁଖ ଶୈଶବେ ଏବେ ଏ ଯୌବନେ ତାହା
ଦୂରଗିରି ପ୍ରାୟ କଳ୍ପନା ନୟନେ କିବା ମନୋରମ ଆହା ।'

ଅର୍ଥାତ୍ ଶୈଶବ ବା ପିଲାଦିନେ କବିଙ୍କୁ ଯାହା ସବୁ ସୁନ୍ଦର ଦେଖା ଯାଉଥିଲା, ଏବେ ଯୌବନ କାଳରେ ସେସବୁ କଳ୍ପନା-ନେତ୍ରରେ ସୁନ୍ଦରତର ଅଥବା ମନୋରମ ରୂପେ ପରିଦୃଷ୍ଟ ହେଉଅଛି ।

ଏଥିରେ ବ୍ୟବହୃତ ଶୈଶବର ଅର୍ଥ ଅଜ୍ଞାନ ଅପ୍ରାପ୍ତ ବୟସ୍କ ଆଠ ବର୍ଷରୁ କମ୍ ଶିଶୁଙ୍କୁ ବୁଝାଯାଏ । ଯୌବନ ଆରମ୍ଭ ହୁଏ ୧୬ ବର୍ଷରୁ । (ଅଖୋଡ଼ଶାତ୍ ଭବେତ୍ ବାଳ ସ୍ତରୁଣ ସ୍ତତ ଉଚ୍ୟତେ) । ଅର୍ଥାତ୍ ଯୌବନର ପୂର୍ବକୁ ବାଳ ବା ବାଲ୍ୟକାଳ କୁହାଯାଏ । ତା'ପରେ ଆମେ ତରୁଣ ବା ଯୌବନ । ପୂର୍ବୋକ୍ତ ଉଦ୍ଧୃତିର ସମୟ ୧୯୦୮ ଜୁଲାଇ ହେଲେ, ସେତେବେଳେ ବଳ କବିଙ୍କୁ ହୋଇଥିବ ୩୨/୩୩ ବର୍ଷ (୧୯୦୮ ଜୁଲାଇ - ୧୮୭୫ ଡିସେମ୍ବର) । ତେଣୁ ତାହାଙ୍କ ବାଲ୍ୟକାଳର ଶେଷ ସମୟ ହେଉଛି ୧୮୯୨ ମସିହା । ଫଳତଃ ଜନ୍ମଠାରୁ ୧୮୯୨ ଭିତରେ ସେ ଯାହାସବୁ ସୁନ୍ଦର ବୋଲି ଉପଭୋଗ କରୁଥିଲେ, ୧୯୦୮ ମସିହା ବେଳକୁ ସେସବୁ ତାହାଙ୍କ କଳନା- ନେତ୍ରରେ ସୁନ୍ଦରତର ହୋଇ ଦେଖାଯାଉଛି । ଏହା ହେଉଛି ପୂର୍ବ ଉଦ୍ଧୃତିର ସାରମର୍ମ । ବାଲ୍ୟକାଳ ସାଧାରଣତଃ ଶୈଶବ ଓ କୈଶୋର (ଯାହା ୧୦ ବର୍ଷରୁ ୧୫ ବର୍ଷ ପର୍ଯ୍ୟନ୍ତ) ଏଇପରି ଦୁଇଭାଗରେ ବିଭକ୍ତ । ଶୈଶବ ଖେଳ ଦୌଡ଼ରେ କଟିଯାଏ, କିନ୍ତୁ ଏହାର ପରବର୍ତ୍ତୀ ସମୟ କୈଶୋରରେ ଅଧ୍ୟୟନ ଆରମ୍ଭ ହୁଏ । କବି ନନ୍ଦକିଶୋରଙ୍କ ୧୮୯୨ର ବହ ପୂର୍ବରୁ ବିଦ୍ୟାରମ୍ଭ ହୋଇଥିଲା । କାରଣ ୧୮୮୯ରେ ସେ ଉଚ୍ଚ ପ୍ରାଥମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ; ଯେତେବେଳେ ତାଙ୍କୁ ହୋଇଥିଲା ୧୩ ବର୍ଷ ବୟସ । ବସ୍ତୁତଃ ଖେଳ, ଦୌଡ଼ ଓ

ବିଦ୍ୟାଧ୍ୟୟନ, ବାଲ୍ୟକାଳର ଏ ଦୁଇଟି ସ୍ୱତନ୍ତ୍ର ବିଭାଗ ଆଲୋଚ୍ୟ 'ଗଛ ଓ କାଠୁରିଆ' ଗୀତରେ ରୂପାୟିତ ହୋଇଅଛି; ଯାହା ଯଥାସ୍ଥାନରେ ବିସ୍ତୃତ ଭାବେ ଆଲୋଚିତ ହେବ ।

ଆଲୋଚ୍ୟ ଗୀତଟି ତିନି ଭାଗରେ ବିଭକ୍ତ । ପ୍ରଥମ ଦୁଇଟି ବିଭାଗରେ ଅ୍ଛି ୫ଟି ଲେଖାଏଁ ପଦ ଓ ଶେଷ ଭାଗରେ ୬ଟି ପଦ । ଏହାର ବିଷୟବସ୍ତୁ [illegible] ଅଛ । ନିଜ ବାଡ଼ିର ଗଛକୁ ନ ହାଣିବା ପାଇଁ କବିଙ୍କର କାଠୁରିଆକୁ ଅନୁରୋଧ (ପ୍ରଥମ ଭାଗ), ଏପରି ନ ହାଣିବାର କାରଣ ପ୍ରଦର୍ଶନ (ଦ୍ୱିତୀୟ ଭାଗ) ଓ ଏ ଉଭୟ ଭାଗର ନବୀକରଣ ଓ ବିଶ୍ଳେଷଣ ମାଧ୍ୟମରେ ଏ 'ଗୀତ'ର ଯଥାର୍ଥ ମୌଳିକ ଲକ୍ଷ୍ୟ ତଥା କବିଙ୍କ ଜୀବନଦର୍ଶନରେ ଥିବା ଅଭିନବ ଦୃଷ୍ଟିଭଙ୍ଗୀର ପରିବେଷଣ ।

ଏହାର ପ୍ରଥମ ଭାଗ ଏଇପରି ଆରମ୍ଭ ହୋଇଅଛି । "ରହ ଆରେ କାଠୁରିଆ ନ ପକାଅ ହାଣି / ଶୁଣ କାନଡେରି ଏ ଗଛ କାହାଣୀ ।।"ଠିକ୍ ଏଇ ପଦଟିଏ ଭାଗର ଶେଷରେ ପୁନରୁକ୍ତ ହୋଇଅଛି । ଦ୍ୱିତୀୟ ଭାଗର ଆରମ୍ଭ : "କାଠୁରିଆ ନ ହାଣ ସେ ଗଛ ରହ ରହ / ତାହାକୁ ଲଗାଇ ଗଲେ ପିତୃ ପିତାମହ ।। କେତେ ଦୁଃଖ ସୁଖ ସେ ଯେ ଦେଖିଛି ଆମ୍ଭର / କେତେ ନୂଆ ପୁଅ, କେତେ ଯାତ ବିଭାଘର ।।" ଏହାହିଁ ଗଛ ନହାଣିବାର କାରଣ ପାଇଁ ଉଦ୍ଦିଷ୍ଟ ଓ ଏଥିରେ ଥିବା ପ୍ରଥମ ପଦ ସାମାନ୍ୟ ଶବ୍ଦଗତ ପରିବର୍ତ୍ତନ ସହ ଏ ବିଭାଗର ଶେଷରେ ମଧ୍ୟ ପୁନରୁକ୍ତ ହୋଇଅଛି । ବିଷୟବସ୍ତୁର ଏପରି ଉପସ୍ଥାପନା ଭିତରେ ଦୁଇଟି ଲକ୍ଷଣ ଥିବାର ଅନୁଭୂତ ହୋଇଥାଏ । ଯଥା : ପ୍ରଥମ, ଏ ପ୍ରତ୍ୟେକ ବିଭାଗର ଗୁନ୍ଥନ କୌଶଳ ଯାହା ଏହି ପ୍ରଥମ ପଦଦ୍ୱୟର ପୁନରୁକ୍ତି ଭିତରେ ଅତିଶୟ ସୁସ୍ପଷ୍ଟ । ପୁନଶ୍ଚ ଏ ଦୁଇଟି ବିଭାଗ କାର୍ଯ୍ୟ (ଗଛ ନ ହାଣିବା) ଓ କାରଣ (ପତୃ ପିତାମହଙ୍କ ଅବଦାନକୁ ରକ୍ଷା କରିବା, ଇତ୍ୟାଦି) ନୀତିରେ ପରସ୍ପର ନିବିଡ଼ ଭାବେ ସମ୍ପୃକ୍ତ, ଯାହା ତୃତୀୟ ବିଭାଗର ଶୀର୍ଷବିନ୍ଦୁରେ ଉପନୀତ ହୋଇଅଛି । ଦ୍ୱିତୀୟ, ଏପରି ପଦର ପୁନରୁକ୍ତି ହେତୁ ଗୀତଟି ଶିଶୁମାନଙ୍କ ଚିତ୍ତକୁ ଆକୃଷ୍ଟ କରିଥାଏ ଓ ସେମାନେ ଏହାକୁ ସହଜରେ ମନେ ରଖିବା ପାଇଁ ସମର୍ଥ ହୋଇଥାନ୍ତି । ଏ କୌଶଳ 'ନାନାବାୟା ଗୀତ'ର ଏକ ମୌଳିକ ଓ ପ୍ରଧାନ ଉଦ୍ଦେଶ୍ୟ ।

ଆଲୋଚ୍ୟ 'ଗୀତ'ରେ ଦୁଇଟି ଦୁର୍ବଳତା ତଥା ସ୍ୱଷ୍ଟତା ଥିବାର ଅନୁମିତ ହେଉଥିଲେ

ହେଁ ସେପରି ଅନୁମାନର କୌଣସି ମୂଲ୍ୟ ନାହିଁ । ଯଥା : ପ୍ରଥମ-ଏଥିରେ ଥିବା 'ଏ ଗଛ' ଓ 'ସେ ଗଛ'ର ପ୍ରୟୋଗ । ଗଛଟିକୁ ହାତ ଦେଖାଇ କହିଲେ, 'ଏ ଗଛ' ଓ ଅନ୍ୟତ୍ର ଅତୀତ ବିଷୟକୁ ଲକ୍ଷ୍ୟ ରଖି ଉଲ୍ଲେଖ କଲେ 'ସେ ଗଛ', ଏଇପରି ବ୍ୟବହାର କରାଯାଇଅଛି । ଯେପରି 'ଶୁଣ କାନଡେରି ଥରେ ଏ ଗଛ କାହାଣୀ' ଓ 'କାଠୁରିଆ ନ ହାଣ ସେ ଗଛ ରହ ରହ' ହେଉଛି ଦ୍ୱିତୀୟ ପ୍ରୟୋଗର ଉଦାହରଣ । ଏ ଉଭୟଥିରେ ଅଭିନୟର ଉପାଦାନ ସ୍ପଷ୍ଟ । ଦ୍ୱିତୀୟ ଦୁର୍ବଳତା ନିମ୍ନ ଦୁଇଟି ପଦକୁ କେନ୍ଦ୍ରକରି ଅତୀବ ବିଭ୍ରାନ୍ତକର ବୋଲି ଅନୁଭୂତ ହୋଇଥାଏ । ସେ ଦୁଇଟି ପଦ ହେଉଛି -

'ମନେପଡ଼େ ପିଲାଦିନେ ଏହାରି ମୂଳରେ  
ଖେଳୁଥିଲି ମୁହିଁ ଖେଳ ସାଥୀ ଗହଳରେ  
ଏବେ ବାଲ୍ୟକାଳେ ପୋଥି ଧରି ଛାଇତଳେ  
ବସିଣ ପଢ଼େ ମୁଁ ସଞ୍ଜ ସକାଳେ ନିଶ୍ଚଳେ ।'

ଏଥିରେ ଥିବା ପ୍ରଥମ ପଦର ଅର୍ଥ ଅତି ସହଜ । ପିଲାଦିନେ ନିଜ ସାଙ୍ଗ ସାଥୀଙ୍କ ସହ ଏଇ ଗଛ ମୂଳରେ ମୁଁ ଖେଳୁଥିଲି । ଏହା ଲେଖିଲାବେଳେ (ଯାହା ୧୯୧୫ ସାଲ ବୋଲି ପୂର୍ବରୁ କୁହାଯାଇଛି) କବିଙ୍କ ପୂର୍ବୋକ୍ତ ଘଟଣା ମନେ ପଡ଼ିବା ଏକାନ୍ତ ସ୍ୱାଭାବିକ । ଅତୀତର ଅନୁଭୂତିକୁ ଏପରି ମନେ ପକେଇବା ହେଉଛି ଏକ ସ୍ୱତନ୍ତ୍ର ଶୈଳୀର ପ୍ରତୀକ; ଯାହା କବିଙ୍କ ଅନ୍ୟାନ୍ୟ କବିତାରେ ମଧ୍ୟ ଦେଖିବାକୁ ମିଳେ । କବିଙ୍କ ''ମେଘ ବରଷିଲା ଟପର ଟପର'' (୧୮୯୭ ନଭେମ୍ବର) କବିତାରେ ଅଛି - ''ଚିନ୍ତା କରୁଁ କରୁଁ ମନେ ପଡ଼ିଯାଏ ବାଲ୍ୟକାଳ ସୁଖ ଭୋଗ'' ଓ '' ମେଘୁଆ ପାଗରେ ଜନନୀ କାଖରେ କାଖହୋଇଥିଲି ଯେବେ / ମନ ଆନନ୍ଦରେ ଗୀତ ଗାଇଥିଲି ମନେପଡ଼େ ତାହା ଏବେ ।।'' ଏ ତିନିଟି ଉଦାହରଣରେ କବିଙ୍କ ରଚନାର ସମୟ ସହିତ ବାଲ୍ୟ ଜୀବନର ଘଟଣା ଓ କାଳର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ । ତେଣୁ ବାଲ୍ୟ ଜୀବନ ଓ ରଚନାର ସମୟ ଏକ ବୋଲି ଭାବିବା ଏକାନ୍ତ ଭ୍ରମାତ୍ମକ । ଅପରପକ୍ଷରେ ପୂର୍ବୋଦ୍ଧୃତ ଦ୍ୱିତୀୟ ପଦର ଅର୍ଥ ହେଉଛି - ଏବେ ବାଲ୍ୟକାଳରେ (ପିଲାଦିନେ ନୁହେଁ) ପୋଥିଧରି ଏ ଗଛର ଛାଇରେ ସକାଳ ଓ ସଂଧ୍ୟାରେ ନିବିଷ୍ଟ ଚିତ୍ତରେ ମୁଁ ଅଧ୍ୟୟନ କରେ । ଏଠାରେ 'ଏବେ' ଶବ୍ଦ ଓ ବର୍ତ୍ତମାନ

କ୍ରିୟାର ପ୍ରୟୋଗ ହେତୁ କବିଙ୍କ ରଚନା କାଳକୁ ହିଁ ଲକ୍ଷ୍ୟ କରାଯାଇଅଛି ବୋଲି ମନେ ହୁଏ । ଅର୍ଥାତ ପୋଥିଧରି ପଢ଼ିବାର ସମୟ ହେଉଛି ୧୯୧୫ ମସିହା । ଏପରି ଅର୍ଥ ସମ୍ପୂର୍ଣ୍ଣ ଅସଙ୍ଗତ । କାରଣ କବିଙ୍କ ଯୌବନ କାଳ ଓ ବାଲ୍ୟକାଳକୁ ଏକ ବୋଲି କହିବା ପରସ୍ପର-ବିରୁଦ୍ଧ ଧାରଣା । ଏ ପଦର ପ୍ରକୃତ ଅର୍ଥ 'ଏବେ ବାଲ୍ୟକାଳ' ଓ 'ପଢ଼େ' ବର୍ତ୍ତମାନ କାଳର କ୍ରିୟା ଉପରେ ନିର୍ଭର କରୁଛି । 'ଏବେ' ଏକ ସମୟସୂଚକ ଶବ୍ଦ ଯାହାର ଅର୍ଥ ବର୍ତ୍ତମାନକ୍ଷେତ୍ରରେ ବାଲ୍ୟକାଳ ସହିତ ସମାନ । ପୁନଶ୍ଚ 'ପଢ଼େ' ବର୍ତ୍ତମାନ କାଳର କ୍ରିୟା ଅତୀତ କାଳର ଅର୍ଥରେ ବ୍ୟବହୃତ ହୋଇଅଛି, ଯାହାର ନିଦର୍ଶନ ଏହିପଦର ପରେ ପରେ ଦିଆଯାଇଅଛି । ଯଥା :

''ପଶ୍ଚିମ ଆକାଶେ ସୂର୍ଯ୍ୟ ଯାଉଥାଏ ବୁଡ଼ି
ଏହି ବସାଗଛେ ପକ୍ଷୀ ଆସୁଥାନ୍ତି ଉଡ଼ି ।
ପୂରୁବ ଆକାଶେ ସୂର୍ଯ୍ୟ ଉଦେ ପ୍ରଭାତରେ
ଉଡ଼ନ୍ତି ପକ୍ଷୀଏ ରାବି ଏହାରି ଡାଳରେ ।''

ଏଥିରେ ବ୍ୟବହୃତ 'ସୂର୍ଯ୍ୟ ବୁଡ଼ି ଯାଉଥାଏ', 'ପକ୍ଷୀ ଉଡୁଥାନ୍ତି', 'ପ୍ରଭାତରେ ସୂର୍ଯ୍ୟ ଉଦେ ଅର୍ଥାତ ଉଦୟ ହୁଅନ୍ତି' ଓ 'ପକ୍ଷୀ ଉଡ଼ନ୍ତି' - ଏ ସମସ୍ତ ଅତୀତ କାଳ ଅର୍ଥରେ ବର୍ତ୍ତମାନ କାଳର ଉଦାହରଣ । କବିଙ୍କ ରଚନା କାଳ ୧୯୧୫ ମସିହା ସହିତ ଏଗୁଡ଼ିକର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ । ପୁନଶ୍ଚ ଏଥିରେ ବ୍ୟବହୃତ ସଂଧ୍ୟା ସମୟ ଓ ପ୍ରାତଃକାଳ ପୂର୍ବକଥିତ 'ବସିଣ ପଢ଼େ ମୁଁ ସଞ୍ଜ ସକାଳେ'ର ପ୍ରତିଧ୍ୱନି ମାତ୍ର । 'ଏବେ ବାଲ୍ୟକାଳେ'ର ଅର୍ଥବୋଧ ପାଇଁ ଏଠାରେ କବିବର ରାଧାନାଥ ରାୟଙ୍କ 'ଚିଲିକା' କାବ୍ୟର ନିମ୍ନ ଉଦ୍ଧୃତଟି ବିଚାର କରନ୍ତୁ ।

'ପାରିଲେଣି ଏବେ ଦେବ ବିକର୍ତ୍ତନ
ଭାଳେରୀ ଶିଖରେ ସ୍ୱର୍ଣ୍ଣ ସିଂହାସନ ।'

ଏହାର ଅର୍ଥ ହେଉଛି ସୂର୍ଯ୍ୟ (ଦେବ ବିକର୍ତ୍ତନ) ଭାଳେରୀ ପର୍ବତର ଉପରି ଭାଗରେ ନିଜର ସୁନାବର୍ଣ୍ଣ ଆସନ ପକାଇଲେଣି (ପାରିଲେଣି), ଅର୍ଥାତ୍ ବର୍ତ୍ତମାନ (ଏବେ) ସଂଧ୍ୟା ହୋଇ ଆସିଲାଣି । କବିବର ରାଧାନାଥ ନିଜର କଳ୍ପନା-ନେତ୍ରରେ ଯେଉଁ ସଂଧ୍ୟାକୁ ଦେଖିଛନ୍ତି, ତାହା କ'ଣ ଚିଲିକା କାବ୍ୟ ରଚନା ସମୟ (୧୮୯୧ ମସିହା) ନା, ଚିଲିକା ହ୍ରଦ ସହିତ ପ୍ରତ୍ୟକ୍ଷ

ସମ୍ପର୍କ ଥିବା ସଂଧ୍ୟା ସମୟ ? ଯଥାର୍ଥତଃ ଏଥିରୁ ଦ୍ୱିତୀୟ ଅଭିମତ ହିଁ କେବଳ ସତ୍ୟ । ଚିଲିକା ଦର୍ଶନର ବହୁଦିନ ପରେ ସେ ଘରେ ବସି ଚିଲିକା ବର୍ଣ୍ଣନା କଲାବେଳେ ଅତୀତରେ ସ୍ୱଚକ୍ଷୁରେ ଦେଖିଥିବା ସୂର୍ଯ୍ୟାସ୍ତ ହଠାତ୍ ତାହାଙ୍କ ମାନସପଟରେ ଉଦ୍‌ଭାସିତ ହୋଇ ଉଠିଥିଲା । ଏଇ ଅର୍ଥଟି 'ଏବେ' ପରି ଏକ ନିର୍ଦ୍ଦିଷ୍ଟ ସମୟସୂଚକ ଶବ୍ଦ ହେତୁ ସମ୍ଭବପର ହୋଇଅଛି । କାରଣ, ରାଧାନାଥ କାବ୍ୟଟି କେଉଁ ବର୍ଷ, କେଉଁ ମାସର କେଉଁ ଦିନ ଓ ତାର କେଉଁ ସମୟରେ ଲେଖିଥିଲେ, ତାହା ସମ୍ପୂର୍ଣ୍ଣ ଅଜ୍ଞାତ । ଠିକ ଅନୁରୂପ ଭାବେ ନନ୍ଦକିଶୋର ୧୮୮୯ ମସିହା (ଉଚ୍ଚ ପ୍ରାଥମିକ ପରୀକ୍ଷାରେ ପାସ୍ କରିଥିବା ସମୟ) ପୂର୍ବର ସମୟକୁ କେନ୍ଦ୍ରକରି 'ଏବେ ବାଲ୍ୟକାଳେ ପୋଥିଧରି' ସମୟର କଥା ଯାହା କହିଅଛନ୍ତି ସେ ସମୟର 'ଗୀତ' ରଚନା ସମୟ ୧୯୧୫ ମସିହା ସହିତ କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ । ଅନ୍ୟ କଥାରେ କହିଲେ ଶୈଶବ ବା ପିଲାଦିନେ ଗଛମୂଳରେ ଖେଳିବା ଓ ବାଲ୍ୟକାଳରେ ପୋଥିଧରି ପଢ଼ିବା - ଏ ଉଭୟ ନନ୍ଦକିଶୋରଙ୍କ ଜୀବନର ଏକ ବାସ୍ତବ ଘଟଣା ଯାହା ସେ ୪୦ ବର୍ଷ ବୟସରେ ସ୍ମରଣ କରିଥିଲେ ମାତ୍ର ।

ଆଲୋଚ୍ୟ ଗୀତର ତିନିଟି ଚରିତ୍ର ହେଉଛି କାଠୁରିଆ, ଗଛ ଓ ନିଜେ କବି । ଏଇ ମାନଙ୍କୁ ନେଇ ତାର ତିନୋଟି ଭାଗ ଗଠିତ । ଏଥିରୁ ଗଛ ଓ କବିଙ୍କ ଭୂମିକା ଅର୍ଥାତ ଏ ଉଭୟର ପାରସ୍ପରିକ ବଳିଷ୍ଠ ସମ୍ପର୍କ ସର୍ବପ୍ରଧାନ । ତଥାପି ଏହା ନିଃସନ୍ଦେହ ଯେ ଏ ସମ୍ପର୍କର ଭିତ୍ତି ହେଉଛି କାଠୁରିଆ ଓ ତାର କାର୍ଯ୍ୟ । କବିଙ୍କ ମତରେ ଏ ଗଛରେ ସୁଗନ୍ଧ ପୁଷ୍ପ ଫୁଟି ନ ପାରେ, କୋକିଳର କୁହୁ ତାନରେ ଏ ଗଛ ମୁଖରିତ ନ ହୋଇ ପାରେ, ପରିଶେଷରେ ଏଥିରେ ମିଠା ଫଳ ଫଳି ନ ପାରେ, ତଥାପି ଏହା ସତ ଯେ, ଖରାଦିନେ ବାଟୋଇ ଏହାତଳେ ବସି ସୂର୍ଯ୍ୟଙ୍କ ପ୍ରଖର ତାପରୁ ନିଜକୁ ରକ୍ଷା କରିଥାଏ । ପୁନଶ୍ଚ କବିଙ୍କ ମତରେ ତାହାଙ୍କ ପିତୃ ପିତାମହଙ୍କ ଦ୍ୱାରା ପରିବର୍ଦ୍ଧିତ ଏ ଗଛ ତାଙ୍କ ପରିବାରର ସୁଖ ଦୁଃଖ, ସନ୍ତାନ ଜନ୍ମ, ସେମାନଙ୍କ ବିଭାଘର ସହ ଅନ୍ୟାନ୍ୟ ଯାନିଯାତ୍ରାର ହେଉଛି ପ୍ରତ୍ୟକ୍ଷ ସାକ୍ଷୀ । ଏଇ ଗଛ ମାଧ୍ୟମରେ କବି ନିଜର ପିତୃ ପିତାମହଙ୍କୁ ତଥା ନିଜର ଶୈଶବ ଓ ବାଲ୍ୟ ଜୀବନର ବିଭିନ୍ନ ମଧୁର ଅନୁଭୂତିକୁ ସ୍ମରଣ କରିବାକୁ ସମର୍ଥ ହେଉଅଛନ୍ତି । ତାଙ୍କରି ଭାଷାରେ : ''ଦେଖି ତାକୁ କେତେ କଥା ହୁଏ ମୋ ସ୍ମରଣ । ତା' ସଂଗେ ଜଡ଼ିତ ମୋର ବିଗତ ଜୀବନ ।'' ତେଣୁ ସେ ବଞ୍ଚି ଥାଉଁ ଥାଉଁ ଏହାକୁ ହାଣିବାକୁ କାଠୁରିଆକୁ

ଦେଇପାରିବେ ନାହିଁ । ସେ ପ୍ରତିଜ୍ଞା କରିଛନ୍ତି, 'ରଖିବି ଏ ଗଛ ମୁହିଁ ସତ୍ୟ ମୋର ବାଣୀ ।' ଓ 'ମୁଁ ଥାଉଁ ଏ ହଣା ହେବ ନ ସହିବ ପ୍ରାଣ' ।

ଯଥାର୍ଥତଃ ଗଛର ମୃତ୍ୟୁ ଅର୍ଥ କବିଙ୍କର ମୃତ୍ୟୁ । ତେଣୁ ତାଙ୍କୁ ବଞ୍ଚିବାକୁ ହେଲେ ଗଛକୁ ମଧ୍ୟ ବଞ୍ଚିବାକୁ ହେବ । ଏହା ହିଁ ଏ 'ଗୀତ'ର ଅନ୍ତର୍ଧ୍ୱନି । ଗଛର ଏଇ ଭୂମିକା ହେଉଛି ଏକ ସର୍ବୋତ୍‌କୃଷ୍ଟ କାବ୍ୟିକ ପରିକଳ୍ପନା । ପୁନର୍ବାର ଗଛ ଓ କବିଙ୍କ ଏଇ ପରିପୂର୍ଣ୍ଣ ଅଭିନ୍ନତା ଭିତରେ ତାହାଙ୍କ ଜୀବନଦର୍ଶନର ଏକ ସମୁଜ୍ଜ୍ୱଳ ଚିତ୍ର ସ୍ୱତଃ ପ୍ରକଟିତ ହୋଇ ଉଠୁଅଛି । ଗଛ ପ୍ରକୃତିର ଏକ ପ୍ରତୀକ ମାତ୍ର । ଗଛର ଏଇ କ୍ଷୁଦ୍ର ଭୂମିକା ଭିତରେ ମଧ୍ୟ କବିଙ୍କ ପ୍ରକୃତିପ୍ରିୟତା ଓ ପଲ୍ଲୀପ୍ରାଣତା ଏକ ସାର୍ଥକ ରୂପ ବିଭବରେ ରୂପାୟିତ ହୋଇଥିବାର ଉପଲବ୍ଧ ହୁଏ । □

# ପଲ୍ଲୀକବି ନନ୍ଦକିଶୋର

## ▫ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)

ପଲ୍ଲୀକବି ଭାବେ ସୁବିଦିତ ନନ୍ଦକିଶୋରଙ୍କ କାବ୍ୟ ସାଧନାର କାଳ ସୁଦୀର୍ଘ ନୁହେଁ, ମୋଟାମୋଟି ଭାବେ ଏହା ପ୍ରାୟ ତିରିଶ ବର୍ଷ : ୧୮୯୬-୯୭ରୁ ୧୯୨୫-୨୬ ପର୍ଯ୍ୟନ୍ତ । ଏଇ ସମୟଟି ଥିଲା ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କ ପ୍ରବର୍ତ୍ତିତ ନୂତନ କାବ୍ୟ ଓ ଗୀତି କାବ୍ୟର ଯୁଗ । ବିଶେଷତଃ ରାଧାନାଥ ଓ ମଧୁସୂଦନଙ୍କ ନବପ୍ରବର୍ତ୍ତିତ କାବ୍ୟ କବିତାର ରୀତି ସେ ଯୁଗରେ ଲେଖକଙ୍କୁ ବିପୁଳ ପରିମାଣରେ ପ୍ରଭାବିତ କରୁଥିଲା । ମାତ୍ର ନନ୍ଦକିଶୋରଙ୍କୁ ଏହି ପ୍ରଭାବର ସୁନିଶ୍ଚିତ ପରିଣାମ କୁହାଯାଇ ନ ପାରେ । ସେ ଥିଲେ ସ୍ୱକୀୟ ମହିମାରେ ସେ ଯୁଗର ସମୁଜ୍ଜ୍ୱଳ ଅନ୍ୟତମ ଅନନ୍ୟ ପ୍ରତିଭା । ପରନ୍ତୁ ତାହାଙ୍କୁ ରାଧାନାଥ, ମଧୁସୂଦନ ଓ ଫକୀରମୋହନଙ୍କର ଉପଯୁକ୍ତ ଦାୟାଦ ଓ ସୁଯୋଗ୍ୟ ଉତ୍ତରସାଧକ କୁହାଯାଇପାରେ । ରାଧାନାଥଙ୍କ ରୂପପ୍ରୀତି, ମଧୁସୂଦନଙ୍କ ଧର୍ମାନୁରକ୍ତି ଓ ଫକୀରମୋହନଙ୍କ ସାରଲ୍ୟ ତଥା ଜୀବନର ବାସ୍ତବ ଚିତ୍ରାଙ୍କନର ସୁସମନ୍ୱୟ ତାହାଙ୍କ ସୃଷ୍ଟିରେ ଏକାଧାରରେ ଦେଖିବାକୁ ମିଳେ । ଉପନ୍ୟାସ, ପ୍ରବନ୍ଧ ରଚନାରେ କୃତିତ୍ୱ ଦର୍ଶାଇଥିଲେ ହେଁ କାବ୍ୟ କବିତା କ୍ଷେତ୍ରରେ ତାହାଙ୍କ ମୌଳିକତାର ସ୍ୱର ସୁସ୍ପଷ୍ଟ । କାବ୍ୟ କବିତା କ୍ଷେତ୍ରରେ ଉପେକ୍ଷିତ, ଅବହେଳିତ ପଲ୍ଲୀ ପ୍ରକୃତି ଓ ପଲ୍ଲୀ ଜୀବନର ସେ ହେଉଛନ୍ତି ଓଡ଼ିଆରେ ଆଦ୍ୟ ଓ ସର୍ବଶ୍ରେଷ୍ଠ ରୂପକାର । ଶିଶୁଉପଯୋଗୀ କବିତା ରଚୟିତା ଭାବେ ମଧ୍ୟ ସେ ସ୍ୱନାମଧନ୍ୟ । ସେ ଥିଲେ ଯେପରି ପରମ୍ପରାବାଦୀ, ସେହିପରି ପ୍ରଗତି ଶୀଳ, ବାସ୍ତବତାସଚେତନ ଓ ଆଦର୍ଶନିଷ୍ଠ । ତାହାଙ୍କ କବିତାରେ ରୋମାଣ୍ଟିକ୍ ଭାବ ପ୍ରବଣତା ଓ ସୁସଂହତ ମନନଶୀଳତାର ସୁସମାବେଶ ଦେଖିବାକୁ ମିଳେ । ଏହା ହିଁ ଥିଲା ନନ୍ଦକିଶୋରଙ୍କ କବିତ୍ୱ ତଥା ସାହିତ୍ୟ ସାଧନାର ବୈଶିଷ୍ଟ୍ୟ ।

ମାନବପ୍ରୀତି ଓ ପ୍ରକୃତିପ୍ରୀତିର କମନୀୟ ଆଲେଖ୍ୟ କବିଙ୍କ କାବ୍ୟସୃଷ୍ଟିର ମୁଖ୍ୟ ବିଭାବ । ବିଶେଷତଃ ତାହାଙ୍କ ପ୍ରାରମ୍ଭିକ କବିତାଗୁଡ଼ିକରେ ପ୍ରୀତି ଉଦ୍‌ବେଳ ହୃଦୟର ସରସ

ଅଭିବ୍ୟକ୍ତି ଦେଖିବାକୁ ମିଳିଥାଏ । ପ୍ରଣୟର ନିବିଡ଼ତମ ଆନନ୍ଦ-ବେଦନାର ବାସ୍ତବ ଚିତ୍ର ଅଙ୍କନରେ ତାହାଙ୍କ କୃତିତ୍ୱ ଉଲ୍ଲେଖଯୋଗ୍ୟ । ସନ୍ଦେହ ନାହିଁ, ପ୍ରକୃତିର ବହୁବିଧ ଶୋଭା କବିଙ୍କୁ ବିମୋହିତ କରିଛି । ମାତ୍ର ତରୁଣୀର ତନୁଶୋଭା ଯେ ତା'ଠାରୁ ଅଧିକ ମନୋଜ୍ଞ ଓ ଆକର୍ଷଣୀୟ, ଏହା କବି ଅକପଟ ଭାବେ ସ୍ୱୀକାର କରିଛନ୍ତି ।

'ସମସ୍ତ ସୁନ୍ଦର କିନ୍ତୁ ତରୁଣୀ ତନୁ
ବାରେ ନିରେଖିଲେ ଆହା ନ ପାଶୋରେ ମନୁ ।
× × ×
ଅଛି ରୂପ ଅପଚୟ ନାହିଁ ତା' କାହାର
ତଥାପି ତରୁଣୀ ଶୋଭା ସଂସାରେ ସୁସାର ।'

ମାତ୍ର କବିଙ୍କର ପ୍ରେମଚିତ୍ର ସର୍ବତ୍ର ସଂଯତ, ଶାଳୀନ ଓ ରମ୍ୟବୋଧର ପରିଚାୟକ । ପ୍ରକୃତିର ସୌନ୍ଦର୍ଯ୍ୟଠାରୁ ସେ ସ୍ନେହପ୍ରୀତି-ମମତାସ୍ନିଗ୍ଧ ମାନବ ଗୃହକୁ ଅଧିକ ବରଣୀୟ ମନେ କରିଛନ୍ତି । କବିଙ୍କ ଭାଷାରେ - ''ବିଚାରିଲି ଏ ପ୍ରକୃତି ହେଲେ ହେଁ ସୁନ୍ଦର/ନୁହେଁ କି ମାନବଗୃହ ମନୋହରତର ।''

ସୁଦୂରର ମୋହ, ଅତୀତର ଆକର୍ଷଣ, ସୌନ୍ଦର୍ଯ୍ୟପ୍ରବଣତା, ସ୍ୱପ୍ନବାଦିତା, କଳ୍ପନା-ପ୍ରବଣତା ପ୍ରଭୃତି ରୋମାଣ୍ଟିକ ଭାବାଦର୍ଶର ଗୁଣାବଳୀ ତାହାଙ୍କ କବିତାବଳୀରେ ବ୍ୟାପକ ଭାବରେ ପରିଦୃଷ୍ଟ ହୁଏ । ପ୍ରକୃତି ଓ ସମାଜର ମଧୁର ରସଧାରାରେ ସେ ଆପଣାକୁ ହଜାଇ ଦେଇଛନ୍ତି । କବିଙ୍କର ଏଇ ରୂପତୃଷ୍ଣା ଓ ଭାବାବେଶର ମଧୁର ଆତ୍ମବିସ୍ମୃତି ତଳେ କାରୁଣ୍ୟର ଏକ କ୍ଷୀଣ ଧାରା ଲକ୍ଷ୍ୟ କରିହୁଏ । ମାତ୍ର କବି ବିଷାଦବାଦୀ ନହୋଇ ବ୍ୟକ୍ତିକ ଦୁଃଖକୁ ତାତ୍ତ୍ୱିକ ଦୃଷ୍ଟିରୁ ହିଁ ବିଚାର କରିଛନ୍ତି । ଏହା କବିଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ପରିଚାୟକ । କବିତାରେ ଆଶାର ସଂଗୀତ ଶୁଣାଇବାକୁ ସେ ଅଭିଳାଷୀ ହୋଇଛନ୍ତି -

'ବିଷାଦ ସଙ୍ଗୀତ କିମ୍ପା ଗାଅ ତେବେ କବି
ଶୁଣାଅ ଆଶାର ଗୀତ ଚିତ୍ର କର୍ମଛବି ।'

ଗାର୍ହସ୍ଥ୍ୟ ଜୀବନାନୁଭୂତି ସମନ୍ୱିତ କବିତା ରଚୟିତା ଭାବେ ମଧ କବି ସୁପ୍ରସିଦ୍ଧ । ଘଟଣା ପ୍ରବାହରେ କବିର ଦୃଷ୍ଟିଭଙ୍ଗୀ ପରିବର୍ତ୍ତିତ ହେବା ସ୍ୱାଭାବିକ । କବି ନନ୍ଦକିଶୋରଙ୍କ ଜୀବନରେ ମଧ ଏହା ଘଟିଥିଲା । ପରିଣତ ବୟସରେ ରୋମାଣ୍ଟିକ ଆବେଗ ପ୍ରବଣତା, ସୌନ୍ଦର୍ଯ୍ୟ ସଂଧାନୀ ମନୋବୃତ୍ତି ପରିବର୍ତ୍ତେ ତାହାଙ୍କ ହୃଦୟକୁ ଅଧିକାର କରିଥିଲା ଏକ ଶାନ୍ତ ସମାହିତ ଧାର୍ମିକ ଦୃଷ୍ଟିଭଙ୍ଗୀ । 'ନିର୍ମାଲ୍ୟ', 'ସଂଧ୍ୟା ସଂଗୀତ', 'ପ୍ରଭାତ ସଂଗୀତ' କବିତା ସଂକଳନରୁ ଏହା ପ୍ରତିପନ୍ନ ହୋଇଥାଏ । କବି ଓ କଳାକାରର ଜୀବନ ଅପେକ୍ଷା ସାଧୁର ଜୀବନକୁ କବି ମହତ୍ତର ବିବେଚନା କରିଛନ୍ତି । ଆନନ୍ଦ ଓ ସୌନ୍ଦର୍ଯ୍ୟ ଅପେକ୍ଷା ନୀତି ଓ ପବିତ୍ରତାକୁ ଆଦର୍ଶ ଭାବେ ଗ୍ରହଣ କରିଛନ୍ତି । ଅଳସ ସ୍ୱପ୍ନବାଦିତା ପରିବର୍ତ୍ତେ କଠୋର କର୍ମପ୍ରବଣତା ହୋଇଛି କବିଙ୍କର ଧ୍ୟେୟ । ଏହି ସମୟରେ କବି ରଚନା କରିଛନ୍ତି ବହୁ ଜାତୀୟବାଦୀ ଆହ୍ୱାନଧର୍ମୀ କବିତା । ସରକାରୀ କର୍ମଚାରୀ ହେବା ସତ୍ତ୍ୱେ ସେ ଇଂରେଜ ସରକାରଙ୍କ ଲବଣକର ନୀତି ବିରୋଧରେ ପ୍ରତିବାଦମୂଳକ କବିତା ରଚନା କରିଛନ୍ତି ।

କବି ବହୁ ସରସ ଗାଥାକବିତା, ଚତୁର୍ଦ୍ଦଶପଦୀ କବିତା, ଶୋକ ଗୀତିକା ଓ ସଂବୋଧନ-ଗୀତିକା ପ୍ରଭୃତି ରଚନା କରି ଓଡ଼ିଆ ଗୀତି ସାହିତ୍ୟକୁ ଯେପରି ବିବିଧ ବିଭାବରେ ସମୃଦ୍ଧ କରି ଯାଇଅଛନ୍ତି, ତାହାର ପଟାନ୍ତର ନାହିଁ । ଓଡ଼ିଆରେ ଶିଶୁ ଉପଯୋଗୀ କବିତାର ଅଭାବ ଅନୁଭବ କରି କବି ପରିଣତ ବୟସରେ ରଚନା କରିଥିଲେ 'ନାନାବାୟା ଗୀତ' (ପ୍ର.ପ୍ର ୧୯୧୫) । ଶୈଶବର ସ୍ମୃତି ଥିଲା କବିଙ୍କ ପକ୍ଷେ ଅତୀବ ସ୍ୱାଦ୍ୟ, ପରମ ରମଣୀୟ । 'ନିର୍ମାଲ୍ୟ' ର ଉତ୍ସର୍ଗ ପତ୍ରରେ କବି ଏହା ସ୍ୱୀକାର କରି ଲେଖିଥିଲେ - 'ଭଲ ହେଉ ବା ମନ୍ଦ ହେଉ ମୁଁ ଯେଉଁ ଓଡ଼ିଆ ପଦ୍ୟଗୁଡ଼ିକ ଲେଖିଅଛି, ତହିଁରେ ଶୈଶବ ସ୍ମୃତି ଜଡ଼ିତ ରହିଅଛି । ମୁଁ ଅତୀତର ଭକ୍ତ । ସେହି ଅତୀତ ସହିତ ଆଜି ତାହା ପ୍ରକାଶ କରି ଆତ୍ମ- ପ୍ରସାଦ ଲାଭ କରୁଅଛି ।' କବି ଶୈଶବର ଜୟଗାନ କରିଥିଲେ ହେଁ ଏହା ଇଂରେଜ ରୋମାଣ୍ଟିକ୍ କବି ୱାର୍ଡ୍‌ସୱାର୍ଥଙ୍କ ରହସ୍ୟବାଦିତାପୂର୍ଣ୍ଣ ଶୈଶବର ତାତ୍ତ୍ୱିକ ଅଭିଜ୍ଞାନ ନୁହେଁ । ନନ୍ଦକିଶୋରଙ୍କ ଶୈଶବ ବାସ୍ତବ, ସହଜ, ସରଳ, ଅନାବିଳ ଓ ତତ୍ତ୍ୱନିରପେକ୍ଷ ।

କବି ଆଧୁନିକ ଇଂରାଜୀ କାବ୍ୟରୂପକୁ ଅନୁସରଣ କରିଥିଲେ ମଧ୍ୟ ଓଡ଼ିଆ ପ୍ରାଚୀନ ଛନ୍ଦରେ ଥିଲେ ଏକାନ୍ତ ଅନୁରାଗୀ । ତାହାଙ୍କ ଗୀତି ରଚନାବଳୀରେ ସେ ପ୍ରାୟ ୨୫ ଗୋଟି

ପାରମ୍ପରିକ ଛାନ୍ଦ ବୃତ୍ତକୁ ବ୍ୟବହାର କରିଅଛନ୍ତି । ଏହି ବୃତ୍ତଗୁଡ଼ିକ ହେଉଛି ଗୁର୍ଜରୀ, ମୁଖାରୀ, କେଦାର ଚକ୍ରକେଳି, କଳହଂସକେଦାର, ଚିନ୍ତାଦେଶାକ୍ଷ, ଆଶାବରୀ, ରାମକେରୀ, କୁମ୍ଭକାମୋଦୀ, ବଙ୍ଗଳାଶ୍ରୀ, ଦୀର୍ଘତ୍ରିପଦୀ, ବିଭାସ ଗୁର୍ଜରୀ, ମାଳିନୀ, ଶଙ୍କରାଭରଣ, ଆଷାଢ଼ଶୁକ୍ଳ, ରସକୁଲ୍ୟା, ଧନାଶ୍ରୀ, ଚୋଖୀ, କାମୋଦୀ, କଲ୍ୟାଣ ... ଗୀ ପ୍ରଭୃତି । ଆଧୁନିକ ଯୁଗର ଅନ୍ୟ କୌଣସି କବି ଏତେ ଅଧିକ ସଂଖ୍ୟକ ପ୍ରାଚୀନ ଛନ୍ଦବୃତ୍ତକୁ ଅନୁସରଣ କରି କବିତା ରଚନା କରିଥିବାର ଦୃଷ୍ଟାନ୍ତ ବିରଳ । ଏହି ଗୀତମାନଙ୍କ ମଧ୍ୟରୁ 'ଡାମରା କାଉରେ ଡାମରା କାଉ', 'ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର', 'ଚମ୍ପା ଫୁଲଟିଏ ପାଇଲି ବନ ହଳଦୀ ପ୍ରାୟେ', 'ଆସ ଆସ ପାରାଯୋଡ଼ିକ ମୋ ପିଣ୍ଡାରେ ବସ ' ପ୍ରଭୃତି ଲୋକଗୀତ ଗୁଡ଼ିକ ଯେ ଯଥାକ୍ରମେ ଚକ୍ରକେଳି, ମଙ୍ଗଳ, ରାମକେରୀ, ଚଳଘଣ୍ଟକେଦାର ବା ଜୟଜୟନ୍ତୀ ବୃତ୍ତର ମୂଳଉତ୍ସ, ଏହା ଆମେ ନନ୍ଦକିଶୋରଙ୍କ ରଚନାରୁ ହିଁ ଅବଗତ ହେଉ ।

ନନ୍ଦକିଶୋର କାବ୍ୟ, କଥା ସାହିତ୍ୟ ଓ ଆଲୋଚନାଦି ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଥିଲେ ହେଁ ଆଧୁନିକ ଗୀତି-କବିତା କ୍ଷେତ୍ରରେ ତାଙ୍କର ଦାନ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ । ତାହାଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରସିଦ୍ଧତମ ଗୀତି କବି ଭାବରେ ଓ ଓଡ଼ିଶାର ପଲ୍ଲୀ ପ୍ରକୃତିର ସୁପ୍ରସିଦ୍ଧ ଚିତ୍ରକର ଭାବରେ ଆମେ ଗଭୀର ଭକ୍ତି ଓ କୃତଜ୍ଞତା ଜଣାଇଥାଉ । ପ୍ରକୃତି ଓ ଜୀବନର ମନୋଜ୍ଞ ଆଲେଖ୍ୟ ରଚନାକରି ତାହାଙ୍କ ତୂଳିକା ଧନ୍ୟ ହୋଇଅଛି ।

ନନ୍ଦକିଶୋରଙ୍କର ଏହି ମୌଳିକତା ତତ୍କାଳୀନ ବହୁ ପ୍ରଥିତଯଶା କବିଙ୍କ ଦ୍ୱାରା ସସମ୍ମାନେ ସ୍ୱୀକୃତ ହୋଇଥିଲା । ନନ୍ଦକିଶୋରଙ୍କ ସଂପର୍କରେ ଭକ୍ତକବି ମଧୁସୂଦନଙ୍କର ନିମ୍ନୋକ୍ତ ଉକ୍ତି ଆଜି ମଧ ବାସ୍ତବିକ ଯଥାର୍ଥ ମନେହୁଏ- '' ସ୍ୱଦେଶୀୟ ଭାବମାଧୁରୀ ସ୍ନିଗ୍ଧ, ସ୍ୱଦେଶୀୟ ଶତ ବାଲ୍ୟସ୍ମୃତି ପବିତ୍ରିତ ଏବଂ ଓଡିଶାର ଅକୃତ୍ରିମ ଜାନପଦ ଭାବୋଚ୍ଛ୍ୱାସ ସମ୍ବଳିତ ଏପରି ମଧୁମୟ, ମର୍ମସ୍ପର୍ଶୀ ଓ ବିଚିତ୍ର କଳସଂଗୀତ ଆଧୁନିକ ଉତ୍କଳ ସାହିତ୍ୟକୁଂଜରେ ଇତିପୂର୍ବେ କୂଜିତ ହୋଇ ନ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।'' □

# ପଲ୍ଲୀକବିଙ୍କର 'ପଲ୍ଲୀଚିତ୍ର' : ଏକ କଳନା

## ◻ ବାସୁଦେବ ସାହୁ

ଆଧୁନିକ ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ନନ୍ଦକିଶୋର ବଳଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ଏହି ସ୍ୱାତନ୍ତ୍ର୍ୟ ସ୍ୱୀକୃତ ହୋଇଛି ଉତ୍କଳୀୟ ପଲ୍ଲୀର ଅନ୍ତରାତ୍ମା ଓ ବହିରଙ୍ଗର ଏକ ପୂର୍ଣ୍ଣାଙ୍ଗ ପରିଚୟ ପାଇଁ । ପଲ୍ଲୀବାସୀଙ୍କର ଜୀବନଚର୍ଯ୍ୟା, ଅନୁଭୂତି, ଅଭିଜ୍ଞତା, କ୍ରିୟା-ପ୍ରତିକ୍ରିୟା, ସୁଖ-ସମସ୍ୟା, ଆଶା-ବିଡମ୍ବନା, ସଫଳତା-ବିଫଳତା, ସୁସ୍ଥ ପରମ୍ପରା ଓ ବିଷମୟ କୁସଂସ୍କାର, ଚରିତ୍ରବତ୍ତା ଓ ଚରିତ୍ରହୀନତା, ବିଭିନ୍ନ ଜାତିର କୌଳିକ କର୍ମ, ବିଭିନ୍ନ ଘଟଣା, ପର୍ବପର୍ବାଣୀ, ଓଷାବ୍ରତ, ସାମାଜିକ, ସାଂସ୍କୃତିକ, ଆଧାତ୍ମିକ, ବୈଷୟିକ, ବାଣିଜ୍ୟ, ଶୈକ୍ଷିକ ବିଭାବର ବିଭିନ୍ନ ପ୍ରାଣକେନ୍ଦ୍ର, ଋତୁଚିତ୍ର, ସକାଳ, ସଂଧ୍ୟା, ମଧ୍ୟାହ୍ନକାଳୀନ ଦୃଶ୍ୟ, ବିଭିନ୍ନ ପ୍ରାକୃତିକ ଚିତ୍ର, ପଶୁପକ୍ଷୀ, କୀଟପତଙ୍ଗ ଓ ଇତର ଜୀବ, ବୃକ୍ଷଲତାଦି ସମ୍ପର୍କରେ ଜାଣିବାକୁ ହେଲେ ନନ୍ଦକିଶୋରଙ୍କର ଗୀତି କବିତାଗୁଡିକୁ ପ୍ରାମାଣିକ ଆଧାର ଭାବରେ ଗ୍ରହଣ କରାଯାଇପାରେ ।

ନନ୍ଦକିଶୋରଙ୍କର ତିନୋଟି କାବ୍ୟ ମଧ୍ୟରୁ 'ଶର୍ମିଷ୍ଠା' ଓ 'ସୀତା ବନବାସ' ପୌରାଣିକ କାବ୍ୟ ଦୁଇଟି ପ୍ରାଚୀନ ଭାରତର ଗୌରବାଢ୍ୟ ସଂସ୍କୃତି, ଚରିତ୍ରବତ୍ତା, ନୈତିକ ଆଦର୍ଶାଦି ଦୃଷ୍ଟିରୁ ଏବଂ 'କୃଷ୍ଣକୁମାରୀ' ଐତିହାସିକ କାବ୍ୟଟି ସ୍ୱଦେଶ ପ୍ରୀତି, ନିଷ୍ଠାପର ଜାତୀୟତାବୋଧ, ବଳିଷ୍ଠ ଆତ୍ମମର୍ଯ୍ୟାଦାବୋଧ, ବୀରତ୍ୱ ଓ ସ୍ୱାର୍ଥତ୍ୟାଗ ଦୃଷ୍ଟିରୁ ମହତ୍ୱପୂର୍ଣ୍ଣ । କିନ୍ତୁ ଏଭଳି କାବ୍ୟ ସୃଷ୍ଟିରେ ନନ୍ଦକିଶୋରଙ୍କର ବିଶେଷତ୍ୱ ସୀମିତ । ଅପରପକ୍ଷରେ ସେ ତାଙ୍କର 'ପଲ୍ଲୀଚିତ୍ର' (୧୮୯୮), 'ନିର୍ଝରିଣୀ' (୧୯୦୦), 'ବସନ୍ତକୋକିଳ' (୧୯୦୧), 'ଚାରୁଚିତ୍ର' (୧୯୦୨), 'ନିର୍ମାଲ୍ୟ' (୧୯୦୩) ମଧ୍ୟରେ ଏହିସବୁ ବୈଶିଷ୍ଟ୍ୟର ଉଜ୍ଜ୍ୱଳ ଦୃଷ୍ଟାନ୍ତରାଶି ରଖିଯାଇଛନ୍ତି ।

ତତ୍କାଳୀନ 'ଉତ୍କଳ ସାହିତ୍ୟ' ପତ୍ରିକାର ଚତୁର୍ଥ ବର୍ଷ ଚତୁର୍ଥ ସଂଖ୍ୟାରେ ଓ ପଞ୍ଚମ ବର୍ଷ ଦ୍ୱାଦଶ ସଂଖ୍ୟାରେ ଯଥାକ୍ରମେ 'ନିର୍ଝରିଣୀ' ଓ 'ବସନ୍ତ କୋକିଳ'ର ଉଚ୍ଚ ପ୍ରଶଂସା କରାଯାଇ ଏ

ଦୁଇଟିରେ କବିଙ୍କର ଶକ୍ତି ଉଜ୍ଜ୍ୱଳତର ରୂପେ ପ୍ରକାଶିତ ହୋଇଛି ବୋଲି କୁହାଯାଇଛି । ତେବେ 'ବସନ୍ତ କୋକିଳ' ସମ୍ପର୍କରେ ମନ୍ତବ୍ୟର ଶେଷ ଅଂଶଟି ''ଖଣ୍ଡକବିତାରେ କବି ବେଶ୍ କୃତିତ୍ୱ ଦେଖାଇଅଛନ୍ତି, ବର୍ତ୍ତମାନ କିଛି ନୂତନ ଗଢ଼ିବାର ଚେଷ୍ଟା କରନ୍ତୁ, ଆମ୍ଭମାନଙ୍କର ଏହି ଅନୁରୋଧ'' ସୂଚାଇଦିଏ ଯେ, 'ବସନ୍ତ କୋକିଳ' ରେ ପାଠକ କିଛି ଅଭାବ ଅନୁଭବ କରିଛନ୍ତି । 'ଚାରୁଚିତ୍ର' ସମ୍ପର୍କରେ 'ଉତ୍କଳ ସାହିତ୍ୟ' ଷଷ୍ଠ ବର୍ଷ ଷଷ୍ଠ ସଂଖ୍ୟାର ମନ୍ତବ୍ୟ ପ୍ରଣିଧାନଯୋଗ୍ୟ - ''ଏଥିମଧ୍ୟରୁ ଅଧିକାଂଶ କବିତାରେ କବି ସୌନ୍ଦର୍ଯ୍ୟ ଅପେକ୍ଷା ଲୋକଶିକ୍ଷା ପ୍ରତି ଅଧିକ ଦୃଷ୍ଟି ଦେଇଛନ୍ତି ।'' ସଂପାଦକ ସୌନ୍ଦର୍ଯ୍ୟବୋଧ ଓ ତାର ଭିତ୍ତିଭୂମି ପଲ୍ଲୀ ପ୍ରତି ଅଧିକ ଧ୍ୟାନ ଦେବାକୁ ନନ୍ଦକିଶୋରଙ୍କ ଠାରୁ ଆଶା କରିଛନ୍ତି । ଏହି ପତ୍ରିକାର ସପ୍ତମ ବର୍ଷ ତୃତୀୟ ସଂଖ୍ୟାରେ 'ନିର୍ମାଲ୍ୟ' ସମ୍ପର୍କରେ ମନ୍ତବ୍ୟ ଦିଆଯାଇଛି - '' ଯେଉଁ ବିଶେଷତ୍ୱ ଘେନି ନନ୍ଦକିଶୋର ବାବୁ କବିଶ୍ରେଣୀରେ ଆସନ ପାଇ ଅଛନ୍ତି, ତାହା ତାଙ୍କର 'ପଲ୍ଲୀଚିତ୍ର' ଓ 'ନିର୍ଝରିଣୀ'ରେ ଏବଂ 'ବସନ୍ତକୋକିଳ'ର ଅଧିକାଂଶ କବିତାରେ ପ୍ରକାଶିତ । ଏଣିକି ତାହାର ଅଭାବ ଦେଖି ଆମ୍ଭେମାନେ ଦୁଃଖିତ ।'' ଏସବୁ ମନ୍ତବ୍ୟ ଗୁଡ଼ିକର ଯୌକ୍ତିକତା ଓ ଯଥାର୍ଥତା ଏଠାରେ ଆଲୋଚ୍ୟ ନୁହେଁ । ଲକ୍ଷ୍ୟ କରାଯାଇପାରେ ଯେ ନନ୍ଦକିଶୋରଙ୍କ 'ପଲ୍ଲୀଚିତ୍ର' ସୃଷ୍ଟିକାଳରୁ ତାଙ୍କୁ 'ପଲ୍ଲୀକବି' ଭାବରେ ହିଁ ପାଠକମାନେ ଗ୍ରହଣ କରି ନେଇଥିବାରୁ ଓ ପଲ୍ଲୀର ବିଭିନ୍ନ ବିଭବର ଚିତ୍ରଣରେ ସେ ଅସାମାନ୍ୟ ନୈପୁଣ୍ୟ ପ୍ରଦର୍ଶନ କରିଥିବାରୁ ତାଙ୍କଠାରୁ ଏହା ଆହୁରି ଅଧିକ ପରିମାଣରେ ଆଶା କରିଛନ୍ତି ଓ ଯେଉଁଠି ଏହି ବିଭାବଗୁଡିକର ପରିମାଣ ହ୍ରାସ ପାଇଥିବାର ଲକ୍ଷ୍ୟ କରିଛନ୍ତି, ସେଠାରେ ଅଭିମାନ ପ୍ରକାଶ କରିଛନ୍ତି । ସ୍ଥୂଳତଃ ଗୀତି କବିତା ମାଧ୍ୟମରେ ପଲ୍ଲୀକବି ଭାବରେ ନନ୍ଦକିଶୋରଙ୍କ ପ୍ରତିଭାର ବିକାଶକାଳକୁ ୧୮୯୮ରୁ ୧୯୦୩ ଏହି ୬ ବର୍ଷ ବୋଲି ବିଚାର କରାଯାଇପାରେ ।

ଊନବିଂଶ ଶତାବ୍ଦୀର ଶେଷ ଦୁଇ ଦଶନ୍ଧିରେ ଓଡିଶାର ଅବହେଳିତ ଦରିଦ୍ର ଅଥଚ ବୈଚିତ୍ର୍ୟପୂର୍ଣ୍ଣ ଓ ଉତ୍କଳୀୟ ସମାଜ-ସଂସ୍କୃତିର ପ୍ରାଣକେନ୍ଦ୍ର ପଲ୍ଲୀ ପ୍ରତି ସାହିତ୍ୟିକମାନଙ୍କର ଦୃଷ୍ଟି ଆକୃଷ୍ଟ ହୋଇଥିଲା । ଗଦ୍ୟରେ ଫକୀରମୋହନ (ଛ'ମାଣ ଆଠଗୁଣ୍ଠ) ଗୋପାଳଚନ୍ଦ୍ର ପ୍ରହରାଜ (ବାଇ ମାହାନ୍ତି ପାଞ୍ଜି, ଭାଗବତ ଟୁଙ୍ଗୀରେ ସଂଧ୍ୟା) ଓ ଶଶିଭୂଷଣ ରାୟ (ଉତ୍କଳର ଋତୁଚିତ୍ର) ପଲ୍ଲୀଜୀବନ, ପଲ୍ଲୀପ୍ରକୃତି ଉପସ୍ଥାପନା ଉପରେ ଗୁରୁତ୍ୱ ଆରୋପ କଲେ । ପଦ୍ୟରେ ନନ୍ଦ କିଶୋର

ବଳ (ପଲ୍ଲୀ ଚିତ୍ର, ନିର୍ଝରିଣୀ, ବସନ୍ତ କୋକିଳ, ଚାରୁଚିତ୍ର, ନିର୍ମାଲ୍ୟ, ନାନାବାୟା ଗୀତ) ଓ ଗୋପାଳ ଚନ୍ଦ୍ର ପ୍ରହରାଜ(ଧୋ'ରେ ବାୟା ଧୋ) ପଲ୍ଲୀର ପୂର୍ଣ୍ଣାଙ୍ଗ ଚିତ୍ର ଅଙ୍କନ କଲେ । ପଲ୍ଲୀବାସୀର ଅକୃତ୍ରିମ, ଅବିକଳ, ସରଳ, ନିରାଡ଼ମ୍ବର, ସ୍ୱାଭାବିକ ଭାଷା, ପ୍ରବଚନ, ଢଗଢମାଳି ଓ ସଂଗୀତ ଛନ୍ଦ ମାଧ୍ୟମରେ ସେ ଯୁଗ ଯୁଗ ଧରି କାବ୍ୟ ସଂସାରରେ ଅପାଂକ୍ତେୟ ଥିବା ପଲ୍ଲୀର ଅଫୁରନ୍ତ ଜୀବନ ସ୍ରୋତକୁ ଏପରି ସଫଳ ଭାବରେ ପ୍ରବାହିତ କଲେ ଯେ, ତାହା ପଲ୍ଲୀବାସୀଙ୍କର ଅତି ଆପଣାର ଓ ସର୍ବସ୍ୱ ହୋଇ ଅନ୍ତର ଭିତରେ ସାଇତା ହୋଇ ରହିଗଲା ।

ଏହି ମହାନ୍ ବିଶେଷତ୍ୱର ଶ୍ରେଷ୍ଠ ପ୍ରତିଫଳନ ଘଟିଛି 'ପଲ୍ଲୀଚିତ୍ର'ରେ । ଏହା ତିନି ଭାଗରେ ବିଭକ୍ତ । ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଭାଗ । ପ୍ରଥମ ଓ ଦ୍ୱିତୀୟ ଭାଗରେ ଏକ ଏକ ପ୍ରସ୍ତାବନା ସଂଯୋଜିତ ।

ପ୍ରଥମ ଭାଗର 'ପ୍ରସ୍ତାବନା'ରେ କବି ନଗର ଅପେକ୍ଷା ପଲ୍ଲୀକୁ ଶାନ୍ତିମୟ ଓ ଶ୍ରେୟସ୍କର ମଣିଛନ୍ତି । ପଲ୍ଲୀର ଚିତ୍ର ଚିରନ୍ତନ ଓ ସର୍ବପୁରାତନ । କବି ନିଜେ ଜଣେ 'ନବ ଚିତ୍ରକର' । ପଲ୍ଲୀଚିତ୍ର ଚିତ୍ରଣ ପାଇଁ ସେ କ'ଣ ଯୋଗ୍ୟ ହୋଇପାରିବେ ବୋଲି କହି ନମ୍ରତା ପ୍ରକାଶ କରିଛନ୍ତି । ପ୍ରଥମ ଭାଗର ପ୍ରଥମ ଦୃଶ୍ୟରେ ରହିଛି 'ପଲ୍ଲୀବାସୀ' କବିତା । ଏଥିରେ ପଲ୍ଲୀବାସୀ ଓ ପଲ୍ଲୀବାସିନୀ ମାନଙ୍କର ବଦ୍ଧ ବିଶ୍ୱାସ (ପ୍ରବାସୀ ପ୍ରିୟଜନଙ୍କର ପ୍ରତ୍ୟାବର୍ତ୍ତନ ସମ୍ପର୍କରେ ଜାଣିବା ପାଇଁ କାକ ଆଗରେ ତିନିଭାଗ ତଣ୍ଡୁଳ ବାଢ଼ିବା), ରାସ୍ତାରେ ଯାଉଥିବା ପଥିକ ଦର୍ଶନରେ ମାନବିକତାର ଉଦୟ, ବାଳକମାନଙ୍କର ଶୁଆ-ଶାରୀ କ୍ରୀଡ଼ା, ନାଥଯୋଗୀର କେନ୍ଦରା ବାଦନ, କେଳାକେଲୁଣୀଙ୍କ ନାଭିଧୂଡୁକି ବାଦନ ପୂର୍ବକ ନୃତ୍ୟ, ଗାଁ ପୋଖରୀ ତୁଠରେ ଗ୍ରାମ ସୀମନ୍ତିନୀମାନଙ୍କର ସ୍ନାନ ଓ କଥୋପକଥନ, ଗଉଡୁଣୀର ଦୁଧଦହି ବିକ୍ରୟ, ମସଲାବାଲୀ, ଗୁଡ଼ିଆଣୀ, କେଉଟୁଣୀ ପ୍ରଭୃତିଙ୍କର କୌଳିକ ବ୍ୟବସାୟ, ଗାଁ ଭାଗବତ ଘରେ ଗ୍ରାମବାସୀମାନଙ୍କର ଗୀତା, ଭାଗବତ, ମହାଭାରତ, ରାମାୟଣ, ଅଷ୍ଟାଦଶ ପୁରାଣ ଓ ଶାସ୍ତ୍ରାଦି ପାଠ ଏବଂ ଆଲୋଚନା, ଗ୍ରାମ ଜମିଦାର, ମହାଜନ, ସାଆନ୍ତାଣୀ, ଗୃହବଧୂ, କୁମାରୀ କନ୍ୟା, ଜ୍ୟୋତିଷ, ଖଣ୍ଡାୟତ, କରଣ, ବ୍ରାହ୍ମଣମାନଙ୍କର ଚଳଣି, ଆଖଡ଼ା ଘରେ କୁସ୍ତି କସରତ ଶିକ୍ଷା ଓ ଅଭ୍ୟାସ, ବୈଷ୍ଣବ ମଠରେ ସାଂସ୍କୃତିକ ଅଧଃପତନ, ଓଡ଼, ତେଲୀ, ଗୁଡ଼ିଆ, ବଣିଆ, ଭଣ୍ଡାରୀ, ଗଉଡ଼, କାଆଁଳ ଗଉଡ଼, ଚମାର, ମୋଚି, କମାର,

କୁମ୍ଭାର, ବଢ଼େଇ, ମାଳୀ, ଥଟାରି, ପାଟରା, ତନ୍ତୀ, ଶୁଧ, କେଉଟ, ତାମିଳୀ, ଶଙ୍ଖାରୀ, କଣ୍ଡରା, ହାଡ଼ି, ପାଣ, ଧୋବା, କାଳିନ୍ଦୀ ବୈଷ୍ଣବ, ଗୋଖା, ବାଗୁତି, ତିଅର ଡ଼ମ, ଚୂହାଡ଼, ଶଅର, ଛତ୍ରଖିଆ, ଶୁଣ୍ଢୀ, କେଳା ପ୍ରଭୃତି ଜାତିମାନଙ୍କର ଜୀବନ ସଂଗ୍ରାମ, ଆଖଡ଼ା ଘରେ ଭାରତ ଲୀଳା, କୃଷ୍ଣଲୀଳା, ରାମଲୀଳା ପ୍ରଭୃତି ଶିକ୍ଷା, ଗୋଗୋଷ୍ଠ ଚରାଇବାବେଳେ ଗୋପାଳ ବାଳକର ବଂଶୀବାଦନ ପ୍ରଭୃତି ଚିତ୍ର ଜୀବନ୍ତ ଭାବରେ ରୂପଲାଭ କରିଛି । 'ଦ୍ୱିତୀୟ ଦୃଶ୍ୟ' ଠାରୁ 'ଅଷ୍ଟମ ଦୃଶ୍ୟ' ପର୍ଯ୍ୟନ୍ତ ରହିଛି ଯଥାକ୍ରମେ ପଲ୍ଲୀର ମୁଖ୍ୟ ଜୀବନଚର୍ଯ୍ୟାର କେନ୍ଦ୍ର ଗ୍ରାମଖଳା, ଗ୍ରାମ ଚାଟଶାଳୀ, ଗ୍ରାମତୋଟା, ଗ୍ରାମଦେବତା (ଅଧିଷ୍ଠାନ), ଗ୍ରାମ-ମହାଦେବ (ମନ୍ଦିର), ଗ୍ରାମ ଶ୍ମଶାନ ଓ ଗ୍ରାମ ହାଟ ।

'ପଲ୍ଲୀଚିତ୍ର'ର ଦ୍ୱିତୀୟ ଭାଗରେ କବି ନିଜ ଜନ୍ମ ପଲ୍ଲୀ ଠାରୁ ଦୂରରେ ଥାଇ ଶୈଶବ ସ୍ମୃତି ଚାରଣ ମାଧ୍ୟମରେ ବିଭିନ୍ନ ଋତୁରେ ପଲ୍ଲୀର ପ୍ରକୃତିକୁ ରୂପ ଦେଇଛନ୍ତି । ଛଅ ଋତୁ ପାଇଁ ସେ ସୃଷ୍ଟି କରିଛନ୍ତି ଛଅଟି କବିତା - 'ଗ୍ରୀଷ୍ମ', 'ବର୍ଷା', 'ଶରତ', 'ହେମନ୍ତ', 'ଶୀତ' ଓ 'ବସନ୍ତ' । ଏହି ଋତୁ ମାନଙ୍କରେ ପାଳିତ ଉତ୍କଳୀୟ ପର୍ବପର୍ବାଣୀ, ଯାନିଯାତ୍ରା, ସାଂସ୍କୃତିକ କାର୍ଯ୍ୟର ବର୍ଣ୍ଣନା ମଧ୍ୟ ରହିଛି । ତେଣୁ ଏଥିରେ ଘଟିଛି ପ୍ରାକୃତିକ ସୌନ୍ଦର୍ଯ୍ୟ ସହ ଜୀବନସୌନ୍ଦର୍ଯ୍ୟର ମଧୁର ମିଳନ । ଏହା ସହିତ ଗଣଜୀବନର ସୁଖ ଦୁଃଖ, ଜୀବନ ଜଞ୍ଜାଳ ଓ ସମାଜର ବିଭିନ୍ନ କ୍ଷେତ୍ରରେ ଘଟୁଥିବା ବିଭିନ୍ନ ଘଟଣାର ପୂର୍ଣ୍ଣାଙ୍ଗ ଚିତ୍ର ମଧ୍ୟ ଏଥିରେ ଲକ୍ଷଣୀୟ ।

'ପଲ୍ଲୀଚିତ୍ର'ର ତୃତୀୟ ଭାଗରେ ରହିଛି 'ଉତ୍କଳ ଶିଳ୍ପୀ', 'ଉତ୍କଳ କୃଷକ', 'ଉତ୍କଳ ଲଳନା', 'ବାଲ୍ୟ ବିଧବା', 'ପଲ୍ଲୀର କ୍ଷୁଦ୍ରତା', 'ପଲ୍ଲୀର କୁସଂସ୍କାର', 'ପଲ୍ଲୀର ବିଳାସୀ ଯୁବକ', 'ପଲ୍ଲୀବାସୀ ଖଣ୍ଡାୟତ', 'ପଲ୍ଲୀବାସୀ କରଣ', 'ପଲ୍ଲୀର ସମର୍ଥ ଭିକ୍ଷୁକ', 'ପଲ୍ଲୀବାସୀ ବ୍ରାହ୍ମଣ' କବିତା । ଏଗୁଡ଼ିକରେ ପଲ୍ଲୀବାସୀଙ୍କର ପାରମ୍ପରିକ ବିଶ୍ୱାସ, ସଂସ୍କାରର ଅଭାବ, ଜଡ଼ତା, କ୍ଷୁଦ୍ର ମନୋଭାବ, ବାଲ୍ୟ ବିବାହ ପରି କୁପ୍ରଥାର ଭୟାବହ ପରିଣାମ, ନିମ୍ନବର୍ଗ ଉପରେ ଉଚ୍ଚବର୍ଗର ଅତ୍ୟାଚାର, କୃଷକର ଜୀବନ ସଂଗ୍ରାମ, ନାରୀ ଜାତି ପ୍ରତି ଅବିଚାର ଓ ଅତ୍ୟାଚାର ଚିତ୍ରିତ ହେବା ସଙ୍ଗେ ସଙ୍ଗେ କବିଙ୍କର ସଂସ୍କାର ମନୋବୃତ୍ତି, ବୈପ୍ଳବିକ ଦୃଷ୍ଟିକୋଣ ଓ ନୀତିବୋଧ ପ୍ରକାଶିତ ହୋଇଛି ।

ପଲ୍ଲୀର ପ୍ରାକୃତିକ ଦୃଶ୍ୟ, ବିଭିନ୍ନ ସାଂସ୍କୃତିକ, ଆଧ୍ୟାତ୍ମିକ, ସାମାଜିକ, ଶୈକ୍ଷିକ, ବାଣିଜ୍ୟିକ, ବୈଷୟିକ କେନ୍ଦ୍ରର ପରିଚୟ, ସୁଘଟଣା, ଦୁର୍ଘଟଣା, ଆନନ୍ଦ, ବିଷାଦ, ସମସ୍ୟା, କୁସଂସ୍କାର, ଉଚ୍ଚ ଚିନ୍ତା ଓ ନୀଚ ଚିନ୍ତାର ଜୀବନଚର୍ଯ୍ୟା ପ୍ରଭୃତି ପଲ୍ଲୀର ସକଳ ବିଭାବ 'ପଲ୍ଲୀଚିତ୍ର'ରେ ସ୍ଥାନ ପାଇଥିବାରୁ ଏହାକୁ ଉତ୍କଳୀୟ ପଲ୍ଲୀ ସମ୍ପର୍କରେ ଜ୍ଞାନ ଆହରଣ ଦୃଷ୍ଟିରୁ 'ଉତ୍କଳୀୟ-ପଲ୍ଲୀ-ବିଶ୍ୱ କୋଷ' ଭାବରେ ଅଭିହିତ କରାଯାଇପାରେ । 'ପଲ୍ଲୀଚିତ୍ର' ମାଧ୍ୟମରେ ଏକ ଅବହେଳିତ ଜୀବନ ଧାରାକୁ ସାହିତ୍ୟର ଉପଜୀବ୍ୟ କରି ଏକ ଆତ୍ମବିସ୍ମୃତ ଜାତିର ପ୍ରାଣରେ ସଚେତନତା ସୃଷ୍ଟି କରିଥିବାରୁ ପଲ୍ଲୀକବି ନନ୍ଦକିଶୋର ବଳଙ୍କର ଅବଦାନକୁ ସ୍ୱୀକୃତି ଦେବାକୁ ଓଡ଼ିଆ ଜାତି ବାଧ୍ୟ । □

# ନନ୍ଦକିଶୋରଙ୍କ କଥାଶିଳ୍ପ : 'କନକଲତା'

## ▫ ବିଭୂତି ପଟ୍ଟନାୟକ

କଟକ ଜିଲ୍ଲା ମାହାଙ୍ଗା ଥାନା କୁସୁପୁର ଗ୍ରାମ । କାଳ- ୧୮୭୫ ମସିହା ଡିସେମ୍ବର, ୨୨ ତାରିଖ, କୃଷ୍ଣପକ୍ଷ ଏକାଦଶୀ ତିଥିରେ ଭୂମିଷ୍ଠ ହୋଇଥିଲେ ରସାନନ୍ଦ ଜେନା- ଅନ୍ୟତ୍ର ପୋଷ୍ୟପୁତ୍ର ହୋଇଯିବା ପରେ ଯାହାଙ୍କର ନୂତନ ନାମକରଣ ହୋଇଥିଲା ନନ୍ଦକିଶୋର ବଳ - ଓଡ଼ିଶାର ପଲ୍ଲୀକବି ଭାବରେ ଯେ ଆମର ସୁପରିଚିତ ।

ନନ୍ଦକିଶୋର ଯେଉଁ ସମୟରେ ଜନ୍ମ ହୋଇଥିଲେ ସେ ସମୟ ଥିଲା ଓଡ଼ିଶାର ରାଜନୈତିକ ଜୀବନରେ ଯେପରି ଏକ କ୍ରାନ୍ତିକାଳ; ଓଡ଼ିଆ ସାହିତ୍ୟ ଇତିହାସର ମଧ୍ୟ ସେହିପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତ । ଇଂରେଜୀ ଶିକ୍ଷା ଓ ପାଶ୍ଚାତ୍ୟ ସଭ୍ୟତାର ସଂସ୍ପର୍ଶରେ ଆସିବା ଫଳରେ ଓଡ଼ିଶାରେ ଯେଉଁ ନୂତନ ଶିକ୍ଷିତ ମଧ୍ୟବିତ୍ତ ବୁଦ୍ଧିଜୀବୀ ଶ୍ରେଣୀର ଅଭ୍ୟୁଦୟ ହୋଇଥିଲା, ନନ୍ଦକିଶୋର ଥିଲେ ସେହିମାନଙ୍କ ମଧ୍ୟରେ ଅନ୍ୟତମ ମଧ୍ୟମଣି । ସଂସ୍କୃତ ସାହିତ୍ୟ ପ୍ରଭାବିତ ମଧ୍ୟଯୁଗୀୟ ସାହିତ୍ୟର ଅବସାନ ପରେ ଇଂରେଜୀ ସାହିତ୍ୟ ଦ୍ୱାରା ଅନୁପ୍ରାଣିତ ହୋଇ ରାଧାନାଥ- ମଧୁସୂଦନ- ଫକୀରମୋହନ ଓଡ଼ିଆ ସାହିତ୍ୟରେ ଏକ ନୂତନ ଯୁଗର ଶିଳାନ୍ୟାସ କରି ସାରିଥିଲେ। ନାଟ୍ୟକାର ଜଗନ୍ମୋହନ, ଔପନ୍ୟାସିକ ରାମଶଂକର, ଉମେଶଚନ୍ଦ୍ର, ଗୋପାଳବଲ୍ଲଭ, କବି ରାଧାନାଥ, ମଧୁସୂଦନ ପ୍ରମୁଖ ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗର ବିଶ୍ୱକର୍ମାମାନେ ସମସ୍ତେ ଥିଲେ ଇଂରେଜୀ ଭାଷାରେ ଶିକ୍ଷିତ । ଫକୀରମୋହନ ଇଂରେଜୀ ଭାଷାରେ ଉଚ୍ଚଶିକ୍ଷା ଲାଭ କରି ନଥିଲେ ମଧ୍ୟ ବଂକିମ-ବିଦ୍ୟାସାଗରଂକ ସୃଷ୍ଟି ସଂପଦର ଝରକାବାଟେ ପାଶ୍ଚାତ୍ୟ ଆଧୁନିକ ସାହିତ୍ୟର ରୂପରେଖ ନିରୀକ୍ଷଣ କରି ସାହିତ୍ୟ ସର୍ଜନା ପାଇଁ ଅନୁପ୍ରାଣିତ ହୋଇଥିଲେ । ତେଣୁ ସେମାନଂକର ସାହିତ୍ୟ ସୃଷ୍ଟି ପାଶ୍ଚାତ୍ୟ ଜୀବନ ଦୃଷ୍ଟି ଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ ଘଟଣା ଥିଲା । ନନ୍ଦ କିଶୋର ୧୮୯୭ ସାଲରେ ଏଫ.ଏ. ଏବଂ ୧୮୯୯ ସାଲରେ ରେଭେନ୍ସା କଲେଜରୁ ବି.ଏ. ପାସ କରି ଓଡ଼ିଆ ସାହିତ୍ୟର ସେହି ନବଯୁଗର ନିର୍ମାତା, ଶିକ୍ଷିତ ବୁଦ୍ଧିଜୀବୀ ଶ୍ରେଣୀର

ଅନ୍ତର୍ଭୁକ୍ତ ହୋଇଥିଲେ । ବୃତ୍ତିରେ ସେ ରାଧାନାଥ-ମଧୁସୂଦନଙ୍କ ଭଳି ଶିକ୍ଷକ, ଶିକ୍ଷା ବିଭାଗର ପ୍ରଶାସକ ଭାବରେ କାର୍ଯ୍ୟ କରିଥିଲେ ମଧ ସାହିତ୍ୟାଦର୍ଶରେ ଥିଲେ ଫକୀରମୋହନଙ୍କର ସମୀପବର୍ତ୍ତୀ । ଓଡ଼ିଶାର ପଲ୍ଲୀଜୀବନ, ପଲ୍ଲୀର ନୈସର୍ଗିକ ଶୋଭା, ପଲ୍ଲୀବାସୀଙ୍କ ସମସ୍ୟା - କଣ୍ଟକିତ ଜୀବନଗାଥା ଥିଲା ତାଙ୍କର ସାହିତ୍ୟ-ସାମଗ୍ରୀ । ସେଥିପାଇଁ ତାଙ୍କୁ କୁହାଯାଏ '' ଓଡ଼ିଆ ସାହିତ୍ୟରେ ପଲ୍ଲୀ ଉତ୍କଳର କାବ୍ୟାତ୍ମା ।''

ନିଃସନ୍ଦେହରେ ନନ୍ଦକିଶୋରଙ୍କ ଶ୍ରେଷ୍ଠ ସୃଷ୍ଟି ପ୍ରତିଭାର ସୁରଭିତ ଉଦ୍ୟାନ ଓ ଉପବନ ହେଉଛି ତାଙ୍କର ଗୀତିକବିତା ଏବଂ କାବ୍ୟ ସମ୍ଭାର । କଥାକାର ଭାବରେ ଗୋଟିଏ କ୍ଷୁଦ୍ରଗଳ୍ପ ଏବଂ ଖଣ୍ଡିଏ ଉପନ୍ୟାସ ମଧ୍ୟରେ ତାଙ୍କର ସୃଷ୍ଟି ସୀମାବଦ୍ଧ । ୧୯୧୩ ମସିହା ମାର୍ଚ୍ଚ ମାସରେ 'ମୁକୁର' ସାହିତ୍ୟ ପତ୍ରରେ ପ୍ରକାଶିତ ତାଙ୍କର ଏକମାତ୍ର ଗଳ୍ପ 'ଲକ୍ଷ୍ମୀ' ଏବଂ ସେହି ବର୍ଷ ଏପ୍ରିଲ ମାସରେ 'ଉତ୍କଳ ସାହିତ୍ୟ' ପୃଷ୍ଠାରେ ଧାରାବାହିକ ଭାବରେ ପତ୍ରସ୍ଥ ଉପନ୍ୟାସ 'କନକଲତା' ରଚନା ପଛରେ ଫକୀରମୋହନଙ୍କ ପ୍ରେରଣା ହିଁ କାର୍ଯ୍ୟ କରିଥିଲା । ''ନନ୍ଦକିଶୋରଙ୍କ ମାମୁଁ ଭଣଜା କାହାଣୀ ଶୁଣି ଫକୀର ମୋହନ 'ମାଧ ମାହାନ୍ତିଙ୍କ କନ୍ୟା ସୁନା' ଗଳ୍ପ ରଚନା କରିଥିଲେ । ଫକୀରମୋହନଙ୍କ ପ୍ରରୋଚନାରେ ନନ୍ଦ କିଶୋର ସ୍ୱଲିଖିତ ଗୋଟିଏ ଗଳ୍ପକୁ 'କନକଲତା' ଉପନ୍ୟାସରେ ରୂପାୟିତ କରିଥିଲେ ।'' 'ଜୀବନୀ ଓ ଜୀବନ' ଗ୍ରନ୍ଥରେ ଡଃ କୁଂଜବିହାରୀ ଦାଶଙ୍କ ଏହି ମନ୍ତବ୍ୟରୁ ଫକୀରମୋହନ ଓ ନନ୍ଦ କିଶୋରଙ୍କ ମଧ୍ୟରେ ଥିବା ସାହିତ୍ୟକ ସୌହାର୍ଦ୍ଦ୍ୟ ଏବଂ ଭାବ ବିନିମୟର ଘନିଷ୍ଠତା ବେଶ ସ୍ପଷ୍ଟ ଓ ପ୍ରାଞ୍ଜଳ ।

'ଭୀମା ଭୂୟାଁ'ର ଲେଖକ ଗୋପାଳ ବଲ୍ଲଭ, 'ମଲାଜହ୍ନ'ର ଲେଖକ ଉପେନ୍ଦ୍ର କିଶୋର ଏବଂ 'ମନେ ମନେ'ର ଔପନ୍ୟାସିକ ବୈଷ୍ଣବ ଚରଣଙ୍କ ଭଳି ନନ୍ଦ କିଶୋର ତାଙ୍କର ଏକମାତ୍ର ଉପନ୍ୟାସ 'କନକଲତା' ପାଇଁ ଓଡ଼ିଆ କଥା ସାହିତ୍ୟରେ ଅବିସ୍ମରଣୀୟ ହୋଇରହିଛନ୍ତି ।

'କନକଲତା' ଉପନ୍ୟାସ ପ୍ରଥମେ 'ଉତ୍କଳ ସାହିତ୍ୟ' ପୃଷ୍ଠାରେ ୧୯୧୩ ମସିହା ଏପ୍ରିଲ ମାସ ସଂଖ୍ୟାରେ ପ୍ରକାଶିତ ହୋଇ ଅସଂପୂର୍ଣ୍ଣ ଭାବରେ ସେହି ବର୍ଷ ନଭେମ୍ବର ସଂଖ୍ୟାରେ ଶେଷ ହୋଇଥିଲା । ଅର୍ଥାତ ସାତୋଟି ପରିଚ୍ଛେଦ 'ଉତ୍କଳ ସାହିତ୍ୟ' ରେ ପ୍ରକାଶିତ ହେଲା ପରେ ନନ୍ଦ କିଶୋର କୌଣସି କାରଣରୁ ଆଉ ସେ ଉପନ୍ୟାସ ଲେଖାରେ ମନ ଦେଇନଥିଲେ । ବାରବର୍ଷ

ପରେ ପାଠକମାନଙ୍କ ଆଗ୍ରହ ଓ ଅନୁରୋଧ ଫଳରେ ଅବଶିଷ୍ଟାଂଶ ଲେଖି ୧୯୨୫ ମସିହାରେ 'କନକଲତା' ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା । ତେଣୁ ୧୯୧୩ ମସିହା ଏପ୍ରିଲରୁ ନଭେମ୍ବର ମାସ ମଧ୍ୟରେ ଲିଖିତ ପ୍ରଥମାଂଶ ଓ ତାର ବାରବର୍ଷ ପରେ ଲିଖିତ ଅବଶିଷ୍ଟାଂଶର କାହାଣୀ ବିନ୍ୟାସ, ଭାଷା ଓ ପ୍ରକାଶଭଙ୍ଗୀ ମଧ୍ୟରେ ଥିବା ପାର୍ଥକ୍ୟ ଉପନ୍ୟାସର ରସଭଙ୍ଗ ସହିତ ଶିଳ୍ପ-ସୌନ୍ଦର୍ଯ୍ୟ ନଷ୍ଟ କରିଛି ବୋଲି ସମାଲୋଚକମାନେ ପ୍ରାୟ ଏକମତ । ଏହା ଆଦୌ ଅସ୍ୱାଭାବିକ ନୁହେଁ । ବାର ବର୍ଷ ଗୋଟିଏ ଯୁଗ । ବାରବର୍ଷ ତଳର ସୃଷ୍ଟି ପ୍ରେରଣା, ଅନୁଭୂତି, ଅଭିବ୍ୟକ୍ତି ବାରବର୍ଷ ପରେ ଭିନ୍ନ ରୂପ, ଅନ୍ୟପଥ ଅନୁସରଣ କରିବା ବରଂ ସ୍ୱାଭାବିକ ।

ଡଃ ନଟବର ସାମନ୍ତରାୟଙ୍କ ଭାଷାରେ - ''ଗଳ୍ପର ପ୍ରଥମାଂଶରେ ନାୟିକା କନକଲତା ଓ ନାୟକ ଧନଞ୍ଜୟଙ୍କର ଆଖଣ୍ଡଳମଣି ମହାଦେବଙ୍କ ମନ୍ଦିର ବେଢ଼ାରେ ଦେଖାସାକ୍ଷାତ, ଉଭୟ ପିତାମାତାଙ୍କ ପରାମର୍ଶରେ ବିବାହ ପ୍ରସ୍ତାବର ଉତ୍ଥାପନ; ବରପକ୍ଷରୁ ଏକ ନିନ୍ଦନୀୟ ଯୌତୁକ ଦାବୀର ଅବତାରଣାରେ ବିବାହ ପ୍ରସ୍ତାବର ବାଧାପ୍ରାପ୍ତି; ନାୟକ ନାୟିକାଙ୍କ ବିଷାଦ-ଜର୍ଜର ହୃଦୟର ବେଦନାରୁ ପରିପ୍ରକାଶ ଉପନ୍ୟାସସ୍ଥିତ ଏଇ ଅଂଶଟି ଗଳ୍ପ ସୁଲଭ ଶିଳ୍ପସଂପଦରେ ପରିପୂର୍ଣ୍ଣ । ଏହା ହିଁ ହେଉଛି ଏ ଉପନ୍ୟାସର ପ୍ରଥମ ପ୍ରକାଶିତ ଅଂଶ । ଏଥିରେ ପଲ୍ଲୀର ଭାଷା ଓ ପରିବେଶ, ବିଶେଷତଃ ଗୋଟିଏ ଖାଣ୍ଟି ଓଡ଼ିଆ ପରିବାରର ବାସ୍ତବ ଓ ସ୍ୱାଭାବିକ ଜୀବନ-ଇତିହାସ ସ୍ରଷ୍ଟାର ସୃଷ୍ଟି-ନିବିଷ୍ଟ-ଚିତ୍ତତା ହେତୁ ସାର୍ଥକ କଳାରେ ପରିଣତ ହୋଇଛି ।'' ଏହି ଉପନ୍ୟାସର ଦ୍ୱିତୀୟାର୍ଦ୍ଧରେ ନନ୍ଦକିଶୋର ସ୍ରଷ୍ଟା ନୁହନ୍ତି, ଜଣେ ସଂସ୍କାରକ ଭାବରେ କଲମ ଧରିଛନ୍ତି । ଯୌତୁକ ପ୍ରଥା, ବାଲ୍ୟବିବାହ ବିରୋଧରେ ଏବଂ ବିଧବା ବିବାହ ସପକ୍ଷରେ ନିଜର ପାଶ୍ଚାତ୍ୟ ସମାଜ ଦର୍ଶନରେ ପ୍ରଭାବିତ ସଂସ୍କାରବାଦୀ ମନର ଅଭିବ୍ୟକ୍ତିକୁ ସେ ଆଦର୍ଶବାଦୀ ଯୁବକ ରାଜେନ୍ଦ୍ର ମୁହଁରେ ବ୍ୟକ୍ତ କରିଛନ୍ତି । ଏଥିରେ ଉପନ୍ୟାସର କଳାତ୍ମକ ସୌନ୍ଦର୍ଯ୍ୟ ଅନେକାଂଶରେ ବିକୃତ ହୋଇଯାଇଥିଲେ ସୁଦ୍ଧା ନନ୍ଦ କିଶୋରଙ୍କ ପ୍ରଗତିଶୀଳ ସାମାଜିକ ଆଭିମୁଖ୍ୟ ପ୍ରକଟିତ ହୋଇଛି । ପାଠକର ମନୋରଞ୍ଜନ ପାଇଁ ରସଘନ କାହାଣୀ ଶୁଣାଇବା ପାଇଁ ସେ 'କନକଲତା' ଲେଖି ନଥିଲେ; ଏକ ଦ୍ରୁତ ପରିବର୍ତ୍ତନଶୀଳ ସମୟର ପ୍ରେକ୍ଷାପଟ୍ଟରେ ସମକାଳୀନ ସମାଜର ସମ୍ଭାବ୍ୟ ରୂପ ପାଠକ ସମ୍ମୁଖରେ ଉପସ୍ଥାପିତ କରିବା ଥିଲା ଲେଖକଙ୍କର ପ୍ରଧାନ ଲକ୍ଷ୍ୟ ।

ହୀରାଖଣ୍ଡପୁରର ସଂଭ୍ରାନ୍ତ ଖଣ୍ଡାୟତ ପରିବାରର କନ୍ୟା କନକଲତା । ତାର ଜନ୍ମଦିନରେ ଆଖଣ୍ଡଳମଣିଙ୍କ ପାଖରେ ପୂଜା ଦେବାପାଇଁ ବାପା ବଜ୍ରଧର ହରିଚନ୍ଦନ ଓ ମା ପଦ୍ମାବତୀଙ୍କସହ ସେ ଦେବଦର୍ଶନରେ ଆସିଥିଲା । ସେହିଦିନ ମଧ୍ୟ ସେଠାକୁ ଆସିଥିଲେ ମୋଚିଝରର ପାଇକରାୟ ପରିବାର । ସେହି ମନ୍ଦିରରେ ହିଁ ନାୟକ ଧନଞ୍ଜୟ ପାଇକରାୟଙ୍କ ସହିତ କନକଲତାର ପ୍ରଥମ ଦୃଷ୍ଟି ବିନିମୟ । ପ୍ରଥମ ଦେଖାରେ ହିଁ ପ୍ରେମ । ସେହି ପ୍ରେମକୁ ସାର୍ଥକ କରିବା ପାଇଁ କନକଲତାର ମାଆ ପଦ୍ମାବତୀ, ଧନଞ୍ଜୟଙ୍କ ମାଆ ଅନ୍ନପୂର୍ଣ୍ଣାଙ୍କ ପାଖରେ ସେ ଦୁହିଁଙ୍କ ବିବାହ ପ୍ରସ୍ତାବ ଉତ୍ଥାପନ କରନ୍ତି ।  କନ୍ୟା ଦେଖା ପରେ ବିବାହ ପ୍ରସ୍ତାବରେ ବରପକ୍ଷ ମଧ୍ୟ ରାଜି ହୋଇଯାଆନ୍ତି । କିନ୍ତୁ ସେମାନଙ୍କ ପକ୍ଷରୁ ବଡ଼ ମାପର ଯୌତୁକ ଦାବୀ ଫଳରେ ବିବାହରେ ଅନିଶ୍ଚିତତା ଦେଖାଯାଏ । କିନ୍ତୁ ହରିଚନ୍ଦନଙ୍କ ଚତୁର୍ଥପୁତ୍ର ରାଜେନ୍ଦ୍ର କନକଲତା ପାଇଁ ନିଜ ସମ୍ପତ୍ତିର ଅଂଶ ଯୌତୁକ ରୂପେ ତ୍ୟାଗ କରିବା ପାଇଁ ସ୍ୱେଚ୍ଛାରେ ସମ୍ମତ ହେଲା ପରେ ଧନଞ୍ଜୟଙ୍କ ସହିତ କନକଲତାର ବିବାହ ସମ୍ପନ୍ନ ହୁଏ । ପରେ ରାଜେନ୍ଦ୍ର ଧନଞ୍ଜୟ ପାଇକରାୟଙ୍କ ବିଧବା ଭଗିନୀ ଉମାକୁ ଦେଖି ତାକୁ ବିବାହ କରିବା ଲାଗି ପ୍ରସ୍ତାବ ଦିଏ । କିନ୍ତୁ ବିଧବା ବିବାହ ଆଇନ ଅନେକ ବର୍ଷ ଆଗରୁ ପାଶ୍ ହୋଇଥିଲେ ସୁଦ୍ଧା ରକ୍ଷଣଶୀଳ ହିନ୍ଦୁ ସମାଜରେ ତା ବିରୋଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶିତ ହୁଏ । ଆଦର୍ଶବାଦୀ, ସମାଜ ସଂସ୍କାରକ ରାଜେନ୍ଦ୍ର ସାମାଜିକ ନୀତି ନିୟମକୁ ଭ୍ରୂକ୍ଷେପ ନକରି ବିଧବା ଉମାକୁ ବିବାହ କରିବା ଆଗରୁ ଆକସ୍ମିକ ଭାବରେ ବିସୂଚିକାରେ ପ୍ରାଣ ହରାଏ ଉମା । ଭଗ୍ନ-ମନୋରଥ ରାଜେନ୍ଦ୍ର ଏ ଦୁଃସମ୍ବାଦ ପାଇ ସଂସାର ତ୍ୟାଗ କରି ସନ୍ନ୍ୟାସୀ ହୋଇଯାଏ ।

ଏହା ହିଁ ହେଉଛି 'କନକଲତା' ଉପନ୍ୟାସରେ ସଂକ୍ଷିପ୍ତ କାହାଣୀ ।

ଊନବିଂଶ ଶତାବ୍ଦୀର ଶେଷ  ଭାଗରେ ନାରୀଶିକ୍ଷା ଓ ବିଧବା ବିବାହ ସପକ୍ଷରେ, ବାଲ୍ୟବିବାହ ବିରୋଧରେ ସାରା ଦେଶରେ ଯେଉଁ ସଂସ୍କାର ଆନ୍ଦୋଳନ ଚାଲିଥିଲା ; ତାର ପ୍ରଭାବ ଓଡ଼ିଶାର ଶିକ୍ଷିତ ଯୁବମାନସକୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ୧୮୫୬ ମସିହାରେ ବିଧବା ବିବାହ ଆଇନ ଗୃହୀତ ହୋଇଥିଲେ ସୁଦ୍ଧା ହିନ୍ଦୁ  ସମାଜର ରକ୍ଷଣଶୀଳତା ଯୋଗୁ ଗ୍ରାମ୍ୟ ଜନ ସମାଜରେ ବିଧବା ବିବାହ ସମ୍ଭବ ନ ଥିଲା । ଅକାଳବୈଧବ୍ୟ ଭୋଗ କରୁଥିବା ଅବଳା ନାରୀମାନଙ୍କର ଆଖିର ଅଶ୍ରୁରେ ଏବଂ ହୃଦୟର ହାହାକାରରେ ଆମର ସମାଜ ଜୀବନ

ଅଭିଶପ୍ତ ଓ ଅଶ୍ରୁସିକ୍ତ ହୋଇ ରହିଥିଲା । ଏହି ଅମାନୁଷିକ, ମାନବିକତାବିହୀନ ସମାଜ ବ୍ୟବସ୍ଥା ବିରୋଧରେ ରାମଶଂକର ରାୟ ତାଂକ 'ବିବାସିନୀ', ଉପେନ୍ଦ୍ର କିଶୋର 'ମଲାଜହ୍ନ'ରେ ଏବଂ ନନ୍ଦ କିଶୋର ତାଂକ 'କନକଲତା' ଉପନ୍ୟାସରେ ନିଜର ସ୍ୱର ଉତ୍ତୋଳନ କରିଛନ୍ତି । କିନ୍ତୁ କେହି ନିଜ ଉପନ୍ୟାସରେ ବିଧବା ବିବାହ ସଂପନ୍ନ କରି ପାରି ନାହାଁନ୍ତି । 'ବିବାସିନୀ'ର ନାୟିକା ବିଧବା କଳାବତୀକୁ ଆତ୍ମହତ୍ୟା କରିବାକୁ ହୋଇଛି । 'ମଲାଜହ୍ନ'ରେ ଉପେନ୍ଦ୍ରକିଶୋର ତାଂକର ବିଧବା ନାୟିକା ସତୀକୁ ନାଥ ଭାଇନାଂଙ୍କ ସହିତ ବିବାହ ନ ଦେଇ ଆଂଗୁଠି ଠାରି ଦେଖାଇ ଦେଇଛନ୍ତି - " ଆଗରେ ନଈ ...."। ନନ୍ଦ କିଶୋର ତାଂକର ବିଧବା ଉମାକୁ ଆତ୍ମହତ୍ୟା କରିବାକୁ ବାଧ ନ କରି ଆକସ୍ମିକ ମୃତ୍ୟୁ ଆଡ଼କୁ ଠେଲିଦେଇ ସମସ୍ୟାର ସମାଧାନ କରି ଦେଇଛନ୍ତି । ରାମଶଙ୍କର , ଉପେନ୍ଦ୍ର କିଶୋର ଓ ନନ୍ଦକିଶୋର ନିଜ ଉପନ୍ୟାସରେ ଯାହା କରି ପାରି ନଥିଲେ; କୁନ୍ତଳା କୁମାରୀ ସାବତ ତାଂକର କ୍ଷୁଦ୍ର ଉପନ୍ୟାସ 'କାଳିବୋହୂ'ରେ ବାଲ୍ୟ ବିଧବା ଲକ୍ଷ୍ମୀକୁ ସମାଜ ସଂସ୍କାରକ ଚନ୍ଦ୍ରୋଦୟ ସହିତ ବିବାହ ଦେଇ ଓଡ଼ିଆ ଉପନ୍ୟାସରେ ବିଧବା ବିବାହର ନୂତନ ଆଦର୍ଶ ପ୍ରତିଷ୍ଠା କରିଥିଲେ । ରାମଶଙ୍କର, ଉପେନ୍ଦ୍ର କିଶୋର ଓ ନନ୍ଦକିଶୋର ରକ୍ଷଣଶୀଳ ହିନ୍ଦୁ ଧର୍ମର ଲକ୍ଷ୍ମଣଗାର ଡେଇଁ ଯାହା କରି ପାରି ନଥିଲେ, ତାହା କୁନ୍ତଳା କୁମାରୀଙ୍କ ଦ୍ୱାରା ସମ୍ଭବ ହୋଇଥିଲା, ତାର କାରଣ ସେ ଥିଲେ ଖ୍ରିଷ୍ଟିୟାନ ପରିବାରର କନ୍ୟା । ତେଣୁ ବ୍ରାହ୍ମ ଧର୍ମ ଓ ଆର୍ଯ୍ୟ ସମାଜର ଆଦର୍ଶରେ ଅନୁପ୍ରାଣିତ ହୋଇ ହିନ୍ଦୁଧର୍ମର ରକ୍ଷଣଶୀଳତା ଉପରେ ଆଘାତ କରିବା ପାଇଁ ତାଙ୍କର କୌଣସି ଦ୍ୱିଧା ନ ଥିଲା ।

ନନ୍ଦ କିଶୋର ମୁଖ୍ୟତଃ ଥିଲେ କବି । କାବ୍ୟ ସାଧନାରେ ତାଂକର ସାହିତ୍ୟିକ ପ୍ରତିଭା ଉତ୍ସର୍ଗୀକୃତ ଥିଲା । କିନ୍ତୁ ଗଦ୍ୟ ରଚନାରେ ତାଂକର ଯେ ଦକ୍ଷତାର ଅଭାବ ନ ଥିଲା, ସେ କଥା 'କନକଲତା'ର ଗଦ୍ୟଶୈଳୀ ଅନୁଧାନ କଲେ ସ୍ପଷ୍ଟ ହୋଇଯାଏ । କବିତା ରଚନାରେ ସେ ଫକୀର ମୋହନଂକ ପଦାଂକ ଅନୁସରଣ କରିଥିଲେ ମଧ୍ୟ 'କନକଲତା' ଉପନ୍ୟାସ ରଚନା କଲାବେଳେ ସେ ନିଜସ୍ୱ ସ୍ୱତଂତ୍ର ଗଦ୍ୟଶୈଳୀ ଆବିଷ୍କାର କରିଛନ୍ତି । ଉପନ୍ୟାସର ପ୍ରଥମ ସାତୋଟି ପରିଚ୍ଛେଦରେ ଏହି ସରଳ, ସାବଲୀଳ, କାବ୍ୟମୟୀ ଭାଷାର ଲାଳିତ୍ୟ ପାଠକ ହୃଦୟକୁ ନିବିଡ଼ ଭାବରେ ସ୍ପର୍ଶ କରେ । ପରବର୍ତ୍ତୀ ପର୍ଯ୍ୟାୟର ଗଦ୍ୟ ଭାଗ ଅନେକାଂଶରେ ରୀତିଯୁଗୀୟ ବର୍ଣ୍ଣନା ଓ କୃତ୍ରିମତାର କଣ୍ଟକାକୀର୍ଣ୍ଣ ।

'କନକଲତା' ଉପନ୍ୟାସର ଚରିତ୍ର ଚିତ୍ରଣରେ ମଧ୍ୟ ନନ୍ଦ କିଶୋର ନିଜର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଛନ୍ତି । ମାୟାଧର ମାନସିଂହ ସେଥିପାଇଁ ତାଂକ 'ଓଡ଼ିଆ ସାହିତ୍ୟର ଇତିହାସ' ଗ୍ରନ୍ଥରେ ଧକପଟ ଚିତ୍ତରେ ସ୍ୱୀକାର କରିଯାଇଛନ୍ତି- ''ନାୟିକା କନକଲତା ଆମ ଆଗରେ ପଲ୍ଲୀ ପୁଷ୍କରିଣୀର ନିର୍ମଳ ସଲିଳରେ ଏକ ରକ୍ତ ପୁଷ୍ପର ପରି ଆସ୍ତେ ଆସ୍ତେ ଫୁଟି ଉଠିଛି ।''

ଆଜି ଓଡ଼ିଆ ଉପନ୍ୟାସ ବିଭିନ୍ନ ବର୍ଣ୍ଣବିଭାରେ ଉଦ୍ଭାସିତ । କିନ୍ତୁ ୧୯୨୫ ମସିହାରେ ନନ୍ଦକିଶୋର 'କନକଲତା' ଲେଖିଲାବେଳେ ସାର୍ଥକ ଓଡ଼ିଆ ଉପନ୍ୟାସ ସଂଖ୍ୟା ଥିଲା ମୁଷ୍ଟିମେୟ । ସେଥିପାଇଁ 'କନକଲତା'ର ପ୍ରକାଶନ ପାଠକ ଓ ସମାଲୋଚକମାନଙ୍କ ମଧ୍ୟରେ ଅପୂର୍ବ ଆଲୋଡ଼ନ ସୃଷ୍ଟି କରିଥିଲା । 'କନକଲତା'କୁ ଅଭିନନ୍ଦନ ଜଣାଇ 'ଉତ୍କଳ ସାହିତ୍ୟ' ପତ୍ରିକାର ସଂପାଦକ ସେତେବେଳେ ମନ୍ତବ୍ୟ କରିଥିଲେ - ''ଅତି ସୁନିପୁଣ ହସ୍ତରେ ବିଚକ୍ଷଣ ଭାବରେ ଲେଖକ ସୁକୋମଳ ତୂଳିକା ଚଳାଇ ତାଂକର ଚରିତ୍ରଗୁଡ଼ିକ ଅଂକନ କରିଛନ୍ତି - ଅତି ତୁଚ୍ଛ ନଗଣ୍ୟ ଚରିତ୍ରଟି ମଧ୍ୟ ଉଜ୍ଜ୍ୱଳ ରୂପେ ଫୁଟିଅଛି । X X X ଫକୀର ମୋହନଙ୍କ 'ଛ ମାଣ ଆଠଗୁଣ୍ଠ' ପରେ ଖାଣ୍ଟି ଓଡ଼ିଆ ଉପନ୍ୟାସ ଏହି ପ୍ରଥମ ପାଠ କଲୁ - ଅଧିକନ୍ତୁ ପୁସ୍ତକ ଖଣ୍ଡି ସୁରୁଚିର ଆଦର୍ଶ ।'' □

# ପଲ୍ଲୀପ୍ରାଣ ନନ୍ଦକିଶୋର

## ▢ ହରପ୍ରସାଦ ପରିଛା ପଟ୍ଟନାୟକ

ଆଜି ପଲ୍ଲୀକବି ନନ୍ଦକିଶୋରଙ୍କ ଜୟନ୍ତୀ ଓଡ଼ିଶାର ପୁର ପଲ୍ଲୀରେ ସର୍ବତ୍ର ପାଳିତ ହେଉଛି । ଏହି ଅବସରରେ ସେହି ମହାନ୍ ସାରସ୍ୱତ ସାଧକଙ୍କ ଅମ୍ଳାନ ସ୍ମୃତି ପ୍ରତି ଶ୍ରଦ୍ଧାସୁମନ ଅର୍ପଣ କରିବା ସଙ୍ଗେ ସଙ୍ଗେ ତାଙ୍କର ମହାର୍ଘ ଅବଦାନର ସାମାନ୍ୟତମ ଆକଳନ କରିବାକୁ ପ୍ରୟାସୀ ହୋଇଛି ମାତ୍ର ।

ଉତ୍କଳର ଆଧୁନିକ ଜନ-କବିତାର ସ୍ରଷ୍ଟା ନନ୍ଦକିଶୋର ବଳ ୧୮୭୫ ମସିହା ଡ଼ିସେମ୍ବର ୨୨ ତାରିଖରେ ବିରୂପାନଦୀ କୂଳବର୍ତ୍ତୀ କୁସୁପୁର ଗ୍ରାମରେ ଜନ୍ମଲାଭ କରିଥିଲେ । ଏହାର ଅନତି ଦୂରରେ ନଦୀର ଉତ୍ତରକୂଳରେ ରତ୍ନଗିରି ଓ ଉଦୟଗିରି ପର୍ବତ ମାଳା, ପୂର୍ବ ଦିଗରେ ନଦୀର ଅପର ପାର୍ଶ୍ୱରେ ତରୁରାଜିଶୋଭିତ ଲଳିତଗିରି । ଦକ୍ଷିଣରେ ମନୋମୁଗ୍ଧକର ଦିଗନ୍ତବିସ୍ତୃତ ଶସ୍ୟଶାମଳା କ୍ଷେତ୍ର । କୁସୁପୁରର ଭୌଗୋଳିକ ଅବସ୍ଥିତି ଓ ପାରିପାର୍ଶ୍ୱିକ ଦୃଶ୍ୟରାଜି ତାଙ୍କ କବିତ୍ୱ ଉନ୍ମେଷର ଅନୁକୂଳ, ଏଥିରେ ସଂଦେହ ନାହିଁ ।

ବାଲ୍ୟ ଓ କୈଶୋର ଜୀବନର ଭାବାବେଶ ଓ ଭାବୋଚ୍ଛ୍ୱାସର କଳାତ୍ମକ ଅଭିବ୍ୟକ୍ତି ଘଟିଥିଲା ତାଙ୍କ କଲେଜ ଜୀବନରୁ । କଲେଜରେ ତୃତୀୟ ବାର୍ଷିକ ଛାତ୍ର ଥିଲାବେଳେ 'ଉତ୍କଳ ପଲ୍ଲୀ ଜୀବନ' ଇଂରାଜୀ ପ୍ରବନ୍ଧ ଲେଖି ସେ ଲାଭ କରିଥିଲେ 'ଟାଙ୍କଚେର ପଦକ' । ସେହି ପ୍ରବନ୍ଧକୁ ସେ ଓଡ଼ିଆ କବିତାରେ ରୂପାନ୍ତରିତ କରି 'ପଲ୍ଲୀଚିତ୍ର' (ପ୍ରଥମ ଭାଗ) ଶୀର୍ଷକରେ ପ୍ରକାଶିତ କରିଥିଲେ । ଏହି ପୁସ୍ତକ ତାଙ୍କୁ ପଲ୍ଲୀପ୍ରକୃତିର ଉପାସକ ଭାବରେ ସର୍ବତ୍ର ପରିଚିତ କରାଇ ପାରିଥିଲା । ସେତେବେଳକୁ ସେ 'ଉତ୍କଳସାହିତ୍ୟ' ପତ୍ରିକାରେ କବିତା ଓ ପ୍ରବନ୍ଧ ଲେଖି ଜଣେ ପ୍ରସିଦ୍ଧ ଲେଖକ ଭାବରେ ଗଣ୍ୟ ହୋଇସାରିଥିଲେ । ୧୯୦୦ ସାଲରେ ପୁସ୍ତକାକାରେ ପ୍ରକାଶିତ 'ପଲ୍ଲୀଚିତ୍ର' ଉପରେ 'ଉତ୍କଳସାହିତ୍ୟ'ର ସୁଯୋଗ୍ୟ ସଂପାଦକ ବିଶ୍ୱନାଥ କରଙ୍କ

ଅଭିମତ ପ୍ରଣିଧାନ ଯୋଗ୍ୟ :

'ନବୀନ କବି ଶ୍ରୀମାନ ନନ୍ଦକିଶୋର ସ୍ୱଳ୍ପ କାଳ ମଧ୍ୟରେ ଉତ୍କଳର ସାହିତ୍ୟ - ରସିକମାନଙ୍କ ନିକଟରେ ସୁପରିଚିତ ହୋଇଅଛନ୍ତି । ସାହିତ୍ୟ ସେବାରେ ତାଙ୍କର ଗଭୀର ଅନୁରାଗ ଓ ଅଦମ୍ୟ ଉତ୍ସାହ ଦେଖି ଆମ୍ଭେମାନେ ମୋହିତ ହୋଇଅଛୁଁ ।...... ନିସର୍ଗମାଧୁରୀର ଅନୁଭବ ଓ ଚିତ୍ରଣ ବିଷୟରେ କବିଙ୍କ ଅସାଧାରଣ କ୍ଷମତା ଦେଖି ଆମ୍ଭେମାନେ ଅତ୍ୟନ୍ତ ପ୍ରୀତି ଲାଭ କରିଅଛୁଁ । ବିଭିନ୍ନ ଜାତି, ବିଭିନ୍ନ ବିଷୟର ଚିତ୍ରମାନ ଅତି ସ୍ୱାଭାବିକ ହୋଇଅଛି । ଆମ୍ଭମାନଙ୍କର ଆଶା ଓ ବିଶ୍ୱାସ, ଏହା ସକଳ ଶ୍ରେଣୀର ସାହିତ୍ୟ ରସିକମାନଙ୍କର ଚିତ୍ତରଞ୍ଜନ କରିବାକୁ ସମର୍ଥ ହେବ ।'' ପଲ୍ଲୀର ଅତି ନଗଣ୍ୟ ଦୃଶ୍ୟ ମଧ୍ୟ ତାଙ୍କ ଦୃଷ୍ଟିକୁ ଏଡ଼ାଇ ପାରିନାହିଁ କି ତାଙ୍କ ଲେଖନୀରୁ ବାଦ୍ ପଡ଼ିନାହିଁ । ତାଙ୍କର ପଲ୍ଲୀପ୍ରାଣତା ଓ ପଲ୍ଲୀ ପ୍ରୀତି କେତେ ନିବିଡ଼ ଓ ଗଭୀର ତାହା ସେ 'ପଲ୍ଲୀ-ଚିତ୍ର' ପ୍ରଥମ ଭାଗର ପ୍ରସ୍ତାବନାରେ ରୂପାୟିତ କରିଛନ୍ତି :

ଶାନ୍ତିପୂର୍ଣ୍ଣ ଆରେ ପଲ୍ଲୀଗ୍ରାମ
ମଧୁରିମାମୟ ତୋର ନାମ ।
ନଗରୀର ରାଜ-ସୁଖ
ମୋହ ପକ୍ଷେ ଘୋର ଦୁଃଖ ।
ଆଗୋ ପ୍ରିୟ ପଲ୍ଲୀ : ତୋ ପଲ୍ଲବମୟ ଅଂକ
ଛାୟାତଳ ଆଶ୍ରିବାକୁ ମୁହିଁ ସଦା ରଂକ ।

'ପଲ୍ଲୀଚିତ୍ର' ଦ୍ୱିତୀୟ ଭାଗରେ ଉତ୍କଳର ଋତୁ ଚିତ୍ର ଅତି ନିଖୁଣ ଭାବରେ ସେ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଘରେ ଘରେ ପ୍ରଚଳିତ ବିଭିନ୍ନ ପର୍ବ ପର୍ବାଣୀର ଅବତାରଣା କରି ନବସଭ୍ୟ ଯୁବ ଗୋଷ୍ଠୀକୁ ଓଡ଼ିଆ ସଂସ୍କୃତି ପ୍ରତି ବିତସ୍ପୃହ ନହେବାକୁ ସେ ପରୋକ୍ଷରେ ଆହ୍ୱାନ ଦେଇଛନ୍ତି । 'ଗ୍ରୀଷ୍ମ'ର ବର୍ଣ୍ଣନାରେ ସେ ଲେଖିଛନ୍ତି :

ବୈଶାଖ ମାସରେ ପଣା ସଂକ୍ରାନ୍ତି
ହୁଅଇ ପଣା ଛତୁଆ,

କାଠ-ଗୋଡ଼ ପିନ୍ଧି ମଙ୍ଗଳା ମୁଣ୍ଡାଇ
ନାଚନ୍ତି ଘଣ୍ଟପାଟୁଆ ।

ପୁଣି ଶରତ ଋତୁର ବର୍ଣ୍ଣନାରେ ଖୁଦୁରୁକୁଣୀ ଓଷା କଥା ମନେପକାଇ କବି ଲେଖିଛନ୍ତି :

ଭାଦ୍ରମାସେ ପଡ଼େ ଖୁଦୁରୁକୁଣୀ ଓଷା
ମାସେ ପାଞ୍ଚପାଳି ହୁଏ,
ପୁଚିଖେଳ ଖେଳି ତଅପୋଇ ବୋଲି
ଓଷା କରୁଥାନ୍ତି ଝିଏ ।

'ପଲ୍ଲୀଚିତ୍ର' ୩ୟ ଭାଗରେ 'ପଲ୍ଲୀର କ୍ଷୁଦ୍ରତା', 'ପଲ୍ଲୀର କୁସଂସ୍କାର', 'ବାଲ୍ୟବିଧବା', 'ଉତ୍କଳ ଲଳନା' ଆଦି କବିତା ଲେଖି ନନ୍ଦକିଶୋର ନିଜର ସଂସ୍କାରବାଦୀ ବ୍ୟକ୍ତିତ୍ୱର ପରିଚୟ ଦେଇଛନ୍ତି । 'ନିର୍ଝରିଣୀ'ରେ କବିଙ୍କର କାବ୍ୟ-ଶକ୍ତି ଉଜ୍ଜ୍ୱଳତର ଭାବେ ପ୍ରକାଶିତ । ରଚନାର ଲାଳିତ୍ୟ ତଥା ଭାବଗାମ୍ଭୀର୍ଯ୍ୟର ଏହା ଏକ ଅଭିନବ ସୃଷ୍ଟି । ତନ୍ମଧ୍ୟରୁ 'ନବବର୍ଷା ଭାବନା', 'ଅଦିନ ମେଘ', 'ବର୍ଷା ମଙ୍ଗଳ', 'କାକବାରତା ', 'ଡାଆଣିଆ ଖରା' ପ୍ରଭୃତି କବିତା ଗୁଡ଼ିକ ଅତୀବ ଜନପ୍ରିୟ ଓ ହୃଦୟସ୍ପର୍ଶୀ । କବିତାର ସ୍ରୋତ ଅପ୍ରତିହତ ଭାବରେ ଗତି କରି ଏହାର 'ନିର୍ଝରିଣୀ' ନାମକୁ ସାର୍ଥକ କରିଛି ।

ନନ୍ଦକିଶୋର ଶିଶୁ ସାହିତ୍ୟ ରଚନାରେ ଅଦ୍ୱିତୀୟ ଓ ଅନତିକ୍ରାନ୍ତ । ଇଂରାଜୀରେ ଯାହାକୁ ନର୍ସରୀ ରାଇମ୍‌ସ୍ କହନ୍ତି, ଓଡ଼ିଆରେ ସେହିପରି ଏକ ପ୍ରତିଷ୍ଠିତ ପ୍ରତିଶବ୍ଦ ନଥିଲା । ମା' କୋଳରେ ପିଲାକୁ ଶୁଆଇବାର, ଶାନ୍ତ କରିବାର ଗୀତ ସବୁଠି ଅଛି । ନନ୍ଦକିଶୋର ଏହାର ନାମ ରଖିଛନ୍ତି 'ନାନା ବାୟା ଗୀତ' । କବି ଶିକ୍ଷକ-ଜୀବନରେ ଛାତ୍ର ସମାଜ ସଙ୍ଗେ ଗଭୀର ଭାବରେ ସଂପୃକ୍ତ ଥିବାରୁ ଶିଶୁ ମାନଙ୍କର ମନସ୍ତତ୍ତ୍ୱ ଜାଣିବାରେ ବିଶେଷ ସୁଯୋଗ ପାଇଥିଲେ । ୧୯୧୫ ମସିହାରେ ସ୍ୱୟଂ କବି ଯେଉଁ ମନ୍ତବ୍ୟ ଦେଇଥିଲେ ତାହା ପ୍ରଣିଧାନ ଯୋଗ୍ୟ : ''ଶିଶୁ ସ୍ୱଭାବତଃ ଯେଉଁ ସବୁ ପଦାର୍ଥ ଓ ବିଷୟ ଦେଖିବା, ଶୁଣିବା, ସ୍ପର୍ଶକରିବା, ଆଘ୍ରାଣ ଓ ଆସ୍ୱାଦନ କରିବାରେ ଆନନ୍ଦ ପ୍ରକାଶ କରେ, ସେହିସବୁ ପଦାର୍ଥ ଓ ବିଷୟ ସାହାଯ୍ୟରେ ତାହାକୁ ଜ୍ଞାନ ପଥରେ ଅଗ୍ରସର

କରାଇବାହିଁ ଶ୍ରେଷ୍ଠ ପନ୍ଥା XXX ଶିଶୁ ମାନେ ସାଧାରଣତଃ ଗୃହ ପାଳିତ ପଶୁପକ୍ଷୀ, ବୃକ୍ଷ ଲତା, ଆକାଶ, ବୃଷ୍ଟି, ନଦୀ ପ୍ରଭୃତି ଯେଉଁସବୁ ପ୍ରାଣୀ, ଦୃଶ୍ୟ ଓ ପଦାର୍ଥ ଚାରିଆଡ଼େ ଦେଖନ୍ତି, ସେମାନଙ୍କ ପ୍ରତି ସେମାନଙ୍କର ସ୍ନେହ, ସହାନୁଭୂତି, କୌତୂହଳ ଜାଗ୍ରତ, ବର୍ଦ୍ଧିତ ହୁଏ । XXX ଶିଶୁ ସମ୍ମୁଖରେ ସ୍ୱଭାବପୂର୍ଣ୍ଣ ଗୀତ ଉପସ୍ଥାପିତ ନକଲେ ସେ ମନ୍ଦଗୀତ ଦ୍ୱାରା ତାହାର ସ୍ୱାଭାବିକ ତୃଷାର ଉପଶମ କରାଇବ ।'' ନନ୍ଦକିଶୋରଙ୍କ ଶିଶୁ-ସାହିତ୍ୟ କିପରି ଶିଶୁ-ମନସ୍ତତ୍ତ୍ୱର ଚିରନ୍ତନ ସତ୍ୟ ଉପରେ ପ୍ରତିଷ୍ଠିତ ତାହା ସହଜରେ ତାଙ୍କର ଅଜସ୍ର କବିତାରୁ ଅତି ସୁସ୍ପଷ୍ଟ । ସେ 'ନିର୍ଝରିଣୀ' କବିତା-ଗ୍ରନ୍ଥର 'ଅଦିନମେଘ' କବିତାରେ :

'ଡ଼ିବିଡ଼ିବି ବାଜେ ଯୋଡ଼ିନାଗରା ହୋ<br>
କାଉ ଡ଼ାକେ କାଆ କାଆ<br>
ଖରା କରୁଅଛି ମେଘ ବରଷୁଛି<br>
ବିଲୁଆ ପୁଅର ବାହା ।'

'କାକା ବାରତା'ରେ :

'ଡ଼ାମରା କାଉରେ ଡ଼ାମରା କାଉ<br>
ଉଚ୍ଚ ପରବତେ ବୋବାଉଥାଉ<br>
ଉଂଚ ପରବତ ଘୁଅ୍ ଘୁଅ୍କା<br>
ତହିଁରେ ବସିଛି ତିନିମଂଜିକା ।'

ନବବର୍ଷା ଭାବନାରେ :

'ମେଘ ବରଷିଲା ଟପର ଟପର କେଶୁର ମାଇଲା ଗଙ୍ଗା<br>
କେଉଁ ରାଇଜରେ ରହିଲେ ମୋ ରଙ୍ଗା ତେଲିଂଗି ବାଇଦ ବଙ୍ଗା ।'

'ଗ୍ରୀଷ୍ମ' କବିତାରେ :

'କେଣେ ଭାସିଯାଉ ଆରେ ଜହ୍ନମାମୁଁ<br>
ମୋ ଧନ ଘରକୁ ଆ' ଆ'

ପାଟ ଲୁଗା ପିନ୍ଧି ମୋ ଧନ ସଙ୍ଗରେ
ଖିରିପିଠା ଖାଇଯାଆ ।'

ନନ୍ଦକିଶୋର ନିଜର ସରଳ, ତରଳ, ଶିଶୁ ସୁଲଭ ଭାଷା ଓ ଭାବରେ ଏହିପରି ଶିଶୁ ଉପଯୋଗୀ ରଚନା ସୃଷ୍ଟି କରି ସେମାନଙ୍କର ଅତି ନିକଟତର ହୋଇପାରିଛନ୍ତି ।

ନନ୍ଦକିଶୋର ଜାତୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ଅନେକ ଗୁଡ଼ିଏ ଦେଶାତ୍ମବୋଧକ କବିତା ରଚନା କରିଛନ୍ତି, ଯାହା ତାଙ୍କର 'ଜନ୍ମଭୂମି' କବିତା ଗ୍ରନ୍ଥରେ ସ୍ଥାନିତ । ଛିନ୍ନମସ୍ତା, ପଦହୀନା, ଲାଂଛିତା ଉତ୍କଳଜନନୀର ପୂର୍ଣ୍ଣ ଅବୟବ ଗଠନ ଗୌରବ ପ୍ରତିଷ୍ଠା ଦିଗରେ ସେ ଆହ୍ୱାନ ଦେଇଛନ୍ତି । 'ଦୁଃଖିନୀ ଉତ୍କଳମାତାର ଗୁହାରି' ଶିରୋନାମାରେ ଲିଖିତ ସେ ଲେଖା ଗୁଡ଼ିକ ଉତ୍କଳର ଜାତୀୟ ସଂପଦ ରୂପେ ଚିରଦିନ ଭାସ୍ୱର ହୋଇରହିଥିବ ।

ନନ୍ଦକିଶୋର ଉଭୟ ଗଦ୍ୟ ଓ ପଦ୍ୟ ସାହିତ୍ୟରେ ଅନୁରୂପ ସିଦ୍ଧହସ୍ତତା ପ୍ରଦର୍ଶନ କରି ଓଡ଼ିଆ ସାହିତ୍ୟ ଇତିହାସକୁ ସୁସମୃଦ୍ଧ କରିଛନ୍ତି । 'କନକଲତା' (ଉପନ୍ୟାସ), 'ଲକ୍ଷ୍ମୀ' (ଗଳ୍ପ) ସହିତ 'ଶର୍ମିଷ୍ଠା', 'କୃଷ୍ଣକୁମାରୀ', 'ସୀତାବନବାସ' କାବ୍ୟ, 'ନିର୍ଝରିଣୀ', 'ପଲ୍ଲୀଚିତ୍ର', 'ବସନ୍ତକୋକିଳ', 'ନାନାବାୟା ଗୀତ', 'ପ୍ରଭାତ ସଂଗୀତ', 'ଜନ୍ମଭୂମି', 'ନିର୍ମାଲ୍ୟ', 'ତରଂଗିଣୀ' ପ୍ରଭୃତି ଗୀତି କବିତା, ଛାନ୍ଦମାଳା (ସମାଲୋଚନା) ଏବଂ ଉତ୍କଳର ବିଶିଷ୍ଟ ବାଣୀ ସାଧକଙ୍କ ସାରସ୍ୱତ କୃତି ସଂବଳିତ ଓ ସମାଜ ସଂସ୍କାର ବିଷୟକ ପ୍ରବଂଧାବଳୀ ରଚନା କରି ଉତ୍କଳ ବାଣୀ ଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି । ଏଠାରେ ସ୍ମରଣ ରଖିବା କଥା ନନ୍ଦକିଶୋରଙ୍କ ସମୟରେ ପାଶ୍ଚାତ୍ୟ ଶିକ୍ଷାର ପ୍ରବର୍ତ୍ତନ ଫଳରେ ଏ ଦେଶର ଶିକ୍ଷିତ ସଂପ୍ରଦାୟ ପଲ୍ଲୀପ୍ରତି ବୀତଶ୍ରଦ୍ଧ ହେଉଥିଲେ, ସହରାଭିମୁଖୀ ହୋଇ କୃତ୍ରିମ ସହରୀ ଚାକଚକ୍ୟରେ ପ୍ରଲୋଭିତ ହେଉଥିଲେ । ଯେପରି ବ୍ୟାସକବି ଫକୀରମୋହନ ତାଙ୍କର ଗଳ୍ପ-ଉପନ୍ୟାସରେ ଇଂରାଜୀ ପଢୁଆ ତଥାକଥିତ ନବସଭ୍ୟ ଯୁବକମାନଙ୍କୁ ନାନା ଚରିତ ମାଧ୍ୟମରେ ବିଦ୍ରୂପକରି ସମାଜ ସଂସ୍କାର କରିବାକୁ ପ୍ରଚେଷ୍ଟା କରିଥିଲେ ସେହିପରି ପଲ୍ଲୀପ୍ରାଣ ନନ୍ଦକିଶୋର ପଲ୍ଲୀଜୀବନର ବିଭିନ୍ନ ବିଭାବ ଚିତ୍ରଣ ମାଧ୍ୟମରେ ପଲ୍ଲୀର ଉତ୍କର୍ଷ ଓ ମହତ୍ତ୍ୱ ପ୍ରକଟିତ କରି ଉନବିଂଶ ଶତାବ୍ଦୀର ପାଶ୍ଚାତ୍ୟ ସଭ୍ୟତାପ୍ରେମୀ ଓ

ଶିକ୍ଷାଭିମାନୀ ଯୁବକ ସଂପ୍ରଦାୟର ଦୃଷ୍ଟି ପଲ୍ଲୀପ୍ରତି ଆକୃଷ୍ଟ କରିଛନ୍ତି । ଇଂରେଜ କବି ଗୋଲଡ୍‌ସ୍ମିଥ୍‌ଙ୍କ ସଙ୍ଗେ ଏକ୍ଷେତ୍ରରେ ନନ୍ଦକିଶୋରଙ୍କୁ ତୁଳନା କରାଯାଇପାରେ । ଗୋଲଡ୍‌ସ୍ମିଥ୍ ପଲ୍ଲୀ ଜୀବନର ସରଳତା, ଆଡ଼ମ୍ବରହୀନତା, ସ୍ୱାଭାବିକତା ପ୍ରତିପାଦନ କରି ସଭ୍ୟତାର କ୍ରମବିକାଶରେ ସମସ୍ତ ନୈସର୍ଗିକ ସୌନ୍ଦର୍ଯ୍ୟ କିପରି ନାନା ପରିବର୍ତ୍ତନର ମଧ୍ୟଦେଇ ବିକୃତ ହୋଇଯାଉଛି ତାହା ଦର୍ଶାଇଛନ୍ତି । ସେହିପରି ନନ୍ଦକିଶୋର ପଲ୍ଲୀର ପ୍ରାକୃତିକ ସୌନ୍ଦର୍ଯ୍ୟ, ଅକୃତ୍ରିମ ଓ ଅନାବିଳ ସମ୍ପର୍କ ତଥା ଉତ୍କର୍ଷ ପ୍ରତି ଅନୁରାଗ ସୃଷ୍ଟିପାଇଁ ତାଙ୍କର କାବ୍ୟ-କବିତା ମାଧ୍ୟମରେ ଆହ୍ୱାନ ଦେଇଛନ୍ତି । 'ପଲ୍ଲୀଚିତ୍ର' ପ୍ରସ୍ତାବନାରେ :

'ଜାଣଇଁ ତୁ ନୋହୁଁ ନିଷ୍କଳଂକ
ଏ ଜଗତେ କିଏ ଅକଳଂକ ?
ତଥାପି ନଗର ପାପ ବିଭୀଷିକା ଦୁଃଖ ତାପ
ତୁଳନାରେ ତୋ କୁଟୀର ଅଟେ ଶାନ୍ତିମୟ
ପଲ୍ଲୀ-ସରଳତା-ଶାନ୍ତି ରଖ କୃପାମୟ ।'

ଏଣୁ ନନ୍ଦକିଶୋରଙ୍କୁ କଳ୍ପନାବିଳାସୀ ବୋଲି ଯେଉଁ ପରିମାଣରେ ଅଭିହିତ କରାଯାଇପାରେ, ଜଣେ ଦୂରଦ୍ରଷ୍ଟା ଭାବୁକ ଓ ପଲ୍ଲୀ ଦର୍ଶନର ପ୍ରତିଷ୍ଠାତାରୂପେ ସେହିପରିମାଣରେ ଗ୍ରହଣ କରାଯାଇପାରେ । ତେଣୁ ଭାଷାର ବିଚାରରେ, ଭାବର ସରଳତାରେ, ପ୍ରକାଶଭଙ୍ଗୀର ସ୍ୱାଭାବିକତାରେ, ପଲ୍ଲୀବାସୀଙ୍କ ପ୍ରତି ତାଙ୍କର ସମ୍ବେଦନଶୀଳତାରେ, ପଲ୍ଲୀର ବିମଳ ସୌନ୍ଦର୍ଯ୍ୟ ଚିତ୍ରଣରେ, ପଲ୍ଲୀପ୍ରୀତି ଓ ଅନୁରାଗରେ ନନ୍ଦକିଶୋର ଅନନ୍ୟ ଓ ଅନତିକ୍ରାନ୍ତ । ସେ ପଲ୍ଲୀର ପ୍ରକୃତିକୁ ମାନବାୟିତ ଏବଂ ମାନବକୁ ନିସର୍ଗାୟିତ କରିଛନ୍ତି । ପଲ୍ଲୀର ନିଛକ ସୌନ୍ଦର୍ଯ୍ୟର ଉପାସକ ଏହି ସାଧକ ତାଙ୍କର ସାରସ୍ୱତ ସାଧନା ଓ ସାର୍ଥକତା ପାଇଁ ଯଥାର୍ଥରେ 'ପଲ୍ଲୀକବି' ଭାବରେ ବନ୍ଦନୀୟ । ☐

# ପଲ୍ଲୀ ଜୀବନର ଦାର୍ଶନିକ : ନନ୍ଦକିଶୋର ଓ ରବର୍ଟ ଫ୍ରଷ୍ଟ

▢ ବନମାଳୀ ବାରିକ

ଓଡ଼ିଶାର ପଲ୍ଲୀକବି ନନ୍ଦ କିଶୋର (୧୮୭୫) ଓ ଆମେରିକାର ପ୍ରମୁଖ କବି ରବର୍ଟ ଫ୍ରଷ୍ଟ (୧୮୭୪)ଙ୍କ ଜନ୍ମ ପ୍ରାୟ ଏକ ସମୟରେ । ଜଣେ ପ୍ରାଚ୍ୟଜଗତର ଗୋଟିଏ ପ୍ରାନ୍ତରେ ଓ ଅନ୍ୟ ଜଣେ ପାଶ୍ଚାତ୍ୟ ଜଗତର ଅନ୍ୟ ଗୋଟିଏ ପ୍ରାନ୍ତରେ । ଦୁଇଜଣଙ୍କ କାବ୍ୟଚେତନା କିନ୍ତୁ ଏକପ୍ରକାର । ଦୁହେଁ ନିଜର ଅଂଚଳକୁ, ନଦୀକୁ, ଝରଣାକୁ, ଅରଣ୍ୟକୁ, ଲୋକଜୀବନକୁ, ଲୋକଚଳଣିକୁ ଅତି ଅନ୍ତରଙ୍ଗ ଭାବରେ ଭଲ ପାଇଛନ୍ତି । ନନ୍ଦ କିଶୋର ଓ ଫ୍ରଷ୍ଟ ଦୁହେଁ ସ୍କୁଲ ଶିକ୍ଷକତାକୁ  ଜୀବନର ପାଥେୟ ରୂପେ ଗ୍ରହଣ କରିଛନ୍ତି । ମାତ୍ର  କବିତା ରଚନା ପ୍ରତି ଦୁହିଁଙ୍କର ଦୁର୍ବାର ଆଗ୍ରହ ପ୍ରକାଶ ପାଇଛି । (ଅବଶ୍ୟ ବିଭିନ୍ନ ସମୟରେ ଫ୍ରଷ୍ଟ ମିଲ୍ ର ବବିନ ବୟ(bobbin boy), ଜୋତାକଳର ଶ୍ରମିକ, ସଂବାଦପତ୍ରର ସାଂବାଦିକ, କୃଷକ ରୂପେ କାର୍ଯ୍ୟକରି ଆଧୁନିକ ଜୀବନର ବିବିଧ ଅଭିଜ୍ଞତା ଅର୍ଜନ କରିବାକୁ ସମର୍ଥ ହୋଇଛନ୍ତି) ।

ଦୁଇ କବିଙ୍କ କବିତାରେ ଓଡିଶା ଓ ନିଉ ଇଂଲଣ୍ଡର (ଆମେରିକାର ପୂର୍ବାଞ୍ଚଳ) ମଣିଷ ଓ ପ୍ରକୃତି ଅତି ଜୀବନ୍ତଭାବରେ  ରୂପାୟିତ ହୋଇଛି ।

ନନ୍ଦକିଶୋର ପଲ୍ଲୀ ଜୀବନର ସେହି ସମୟର ବାସ୍ତବଚିତ୍ର ଆଙ୍କିଛନ୍ତି ତାଙ୍କର 'ପଲ୍ଲୀଚିତ୍ର', 'ନିର୍ଝରିଣୀ', 'ବସନ୍ତ କୋକିଳ' ଆଦି ଗ୍ରନ୍ଥରେ । ରୁଗ୍ଣ ଓ କୁସଂସ୍କାରଗ୍ରସ୍ତ ସମାଜର ଦୁର୍ବଳ ଦିଗକୁ ସେ ସମାଲୋଚନା କରିଛନ୍ତି । କିନ୍ତୁ ମଟାଳ ଶ୍ୟାମଳ ପଲ୍ଲୀର ପରମ ବିଭୂତିକୁ ସେ ବିଶ୍ୱସ୍ତ କଳାକାର ଭାବରେ ଓଡ଼ିଆ କବିତାରେ ଲିପିବଦ୍ଧ କରିଯାଇଛନ୍ତି । ନନ୍ଦକିଶୋର 'ଜନ୍ମଭୂମି' ଭଳି କବିତା ଗ୍ରନ୍ଥରେ ଓଡ଼ିଶାର ରାଜନୈତିକ ଓ ସାଂସ୍କୃତିକ ଜୀବନର ମହିମା ଉଲ୍ଲେଖ କରିବା ସହ ଏକ ଆଶାବାଦୀ ମନନେଇ ନବୀନ ଉତ୍କଳର ସ୍ୱପ୍ନ ଦେଖିଛନ୍ତି । ଫ୍ରଷ୍ଟ ଆମେରିକାର

ଏକ ବିଶେଷ ଅଂଚଳ ଯଥା ନିଉହାମ୍ପସାୟାର (New Hampshire) ଅଂଚଳର ପ୍ରକୃତି ଓ ମଣିଷର ଅନୁରକ୍ତ କବିରୂପେ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ଜଣେ ସମାଲୋଚକ କହିଛନ୍ତି- 'Although Robert Frost is now acknowledged to be the world poet, he is primarily a poet of the rural world, chiefly concerned with his native place New Hampshire.' ତାଙ୍କ କବିତାରେ ଗ୍ରାମର କୃଷକ, କୃଷିକ୍ଷେତ୍ର, ଫଳ ବଗିଚା, ଝରଣା--ମୋଟ ଉପରେ ଗ୍ରାମ୍ୟ ପ୍ରକୃତିର ଅନାବିଳ ସୌନ୍ଦର୍ଯ୍ୟ ଫୁଟି ଉଠିଛି । ସେ ପ୍ରକୃତିର କବି; କିନ୍ତୁ ୱାର୍ଡସୱାର୍ଥଙ୍କ ଠାରୁ ଭିନ୍ନ । ୱାର୍ଡସୱାର୍ଥଙ୍କ ଜଗତ ସମ୍ପୂର୍ଣ୍ଣ ଭାବେ ରୋମାଣ୍ଟିକ୍, କିନ୍ତୁ ଫ୍ରଷ୍ଟ ନିଜ କବିତାରେ ତାଙ୍କ ପରିଚିତ ଅଂଚଳର ଜୀବନଯାତ୍ରା, ରୀତିନୀତି, ବାକ୍‌ଭଂଗୀ, ଶବ୍ଦ ବିଭବକୁ ଏପରି ଚମତ୍କାର ଭାବରେ ସୁଷମାନ୍ୱିତ କରିଯାଇଛନ୍ତି ଯାହା ରୋମାଣ୍ଟିକ୍ କାବ୍ୟାଦର୍ଶର ସ୍ୱୀକୃତି ପାଇବ ନାହିଁ । 'Blue Berries', 'Birches After Apple Picking' ଭଳି କବିତାରେ ସାଧାରଣ ଦୃଶ୍ୟକୁ ସେ ଅସାଧାରଣ ମହିମା ପ୍ରଦାନ କରିଛନ୍ତି । ତାଙ୍କ ବର୍ଣ୍ଣିତ ଅରଣ୍ୟାୟିତ ଉପତ୍ୟକା ଓ ପର୍ବତମାଳା, ରସବେରୀ ବଣରେ ସୂର୍ଯ୍ୟୋଦୟର ଦୃଶ୍ୟାବଳୀ ଅତି ଜୀବନ୍ତ । ସମାଲୋଚକ Granville Hicksଙ୍କ ଭାଷାରେ "He is a poet of fields and brooks. His subject is the region laying to the north of Boston and from that too he choose rural areas of farms and villages."

ରୋମାଣ୍ଟିକ୍ କବିମାନଙ୍କ ପଳାୟନ ଦୃଷ୍ଟି (Escapism) ଫ୍ରଷ୍ଟଙ୍କୁ ପ୍ରଭାବିତ କରିନାହିଁ । ସେ ବରଂ ପୃଥିବୀକୁ ପ୍ରେମ ଓ ଆନନ୍ଦର ନିଳୟ ବୋଲି ଘୋଷଣା କରିଛନ୍ତି । ତାଙ୍କ ମତରେ କିଛି କାଳ ପାଇଁ ହୁଏତ ମଣିଷ ମାଟିକୁ ଭୁଲି ଯାଇପାରେ; କିନ୍ତୁ ଏହାକୁ ଛାଡ଼ି ଅନ୍ୟତ୍ର ଯିବା ଏକ ବିଡ଼ମ୍ୱିତ ଭାବନା । ତେଣୁ ସେ କହିଛନ୍ତି-

"Earth is the right place for love. I don't know where it is likely to go better." ନନ୍ଦକିଶୋରଙ୍କ କାଳର ପରାଧୀନ ଓଡ଼ିଶାର ପଲ୍ଲୀଜୀବନ [illegible]-ଦାରିଦ୍ର୍ୟ-କୁସଂସ୍କାର ବ୍ୟାଧିଗ୍ରସ୍ତ ହୋଇ ରହିଥିଲା । ଏହି ବାସ୍ତବତାକୁ ସ୍ୱୀକାର କରି କବି ଘୋଷଣା କରିଥିଲେ:

ତଥାପି ତୁ ନୋହୁ ନିଷ୍କଳଙ୍କ
ଏ ଜଗତେ କିଏ ଅକଳଙ୍କ ?
ତଥାପି ନଗର ପାପ ବିଭୀଷିକା ଦୁଃଖ ତାପ
ତୁଳନାରେ ତୋ କୁଟୀର ଅଟେ ଶାନ୍ତିମୟ
ପଲ୍ଲୀ ସରଳତା-ଶାନ୍ତି ରଖ କୃପାମୟ ।

('ପଲ୍ଲୀ ଚିତ୍ର' ପ୍ରସ୍ତାବନା)

ନନ୍ଦକିଶୋର ଓ ଫ୍ରଷ୍ଟ ଦୁଇ କବିଙ୍କର ଜୀବନ ଦୃଷ୍ଟି ଥିଲା ଅଭିନ୍ନ--କିନ୍ତୁ ପରିବେଶ ଥିଲା ସ୍ୱତନ୍ତ୍ର । ନନ୍ଦକିଶୋର ପଲ୍ଲୀର ଯେଉଁ ମାନଙ୍କୁ ଦେଖିଥିଲେ (ଖଣ୍ଡାୟତ, ବ୍ରାହ୍ମଣ, ଭିକ୍ଷୁକ, ବିଳାସୀ ଯୁବକ, କୃଷକ ପ୍ରଭୃତି) ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଆଳସ୍ୟ ପରାୟଣ, ଅଜ୍ଞ, କର୍ମକୁଣ୍ଠ । ସୁତରାଂ ଏମାନଙ୍କ ଅଭ୍ୟୁଦୟ କବି କଳ୍ପନାରେ ଥିଲା ସୁଦୂର ପରାହତ ।

ଫ୍ରଷ୍ଟ ମଧ୍ୟ ଦେଖିଥିଲେ : ଗ୍ରାମ ଗୁଡ଼ିକର ଲୋକ ସଂଖ୍ୟା କ୍ରମଶଃ କ୍ଷୀଣ ହେବାରେ ଲାଗିଛି, ସହରର ମାୟା ମଣିଷକୁ ଆକୃଷ୍ଟ କରିଛି । କୃଷିକ୍ଷେତ୍ର ସବୁ ପଡ଼ିଆ ଜମିରେ ପରିଣତ ହେଉଛି ।

ଏହି ସାମାଜିକ ଓ ଅର୍ଥନୈତିକ ବିଶୃଙ୍ଖଳା କବିଙ୍କୁ ଗଭୀର ମର୍ମାହତ କରିଥିଲା । ନନ୍ଦକିଶୋର ମଧ୍ୟ ଏହି ସମସ୍ୟାର ସମ୍ମୁଖୀନ ହୋଇଥିଲେ । ଦୁଇ କବି ଅବଶ୍ୟ ଏହାର ସହଜ ସମାଧାନ-ସୂତ୍ର ଦେବାକୁ ଚେଷ୍ଟା କରିନଥିଲେ । କିନ୍ତୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଅନେକ ସମ୍ଭାବନାର ସୂଚନା ଦୁହିଁଙ୍କ କବିତାରେ ଉପଲବ୍ଧ ।

ଭଗବାନଙ୍କ ସମ୍ପର୍କରେ ନନ୍ଦକିଶୋର ଏବଂ ଫ୍ରଷ୍ଟଙ୍କ ଚିନ୍ତାଧାରା ଥିଲା ପ୍ରାୟତଃ ଏକ ପ୍ରକାର । ଦୁଇ ପ୍ରାନ୍ତରେ ହେତୁବାଦୀ ବିଚାର (Rational Faculty) ବିକଶିତ ହେବାରେ ଲାଗିଥିଲା । ମଣିଷ କାଳକ୍ରମେ ଈଶ୍ୱରୀୟ ସତ୍ତା ଠାରୁ ଦୂରକୁ ଘୁଞ୍ଚି ଘୁଞ୍ଚି ଯାଉଥିଲା ।

ଫ୍ରଷ୍ଟ ଯୁକ୍ତିତର୍କ-ଗ୍ରସ୍ତ ମଣିଷକୁ 'The Bear' କବିତାରେ ପିଞ୍ଜରାବଦ୍ଧ ଭାଲୁ ସହିତ ତୁଳନା କରିଛନ୍ତି । ତାଙ୍କ ମତରେ ବିଶ୍ୱାସ ହିଁ ଜୀବନକୁ ସୁନ୍ଦର ଓ ଈଶ୍ୱରଙ୍କ ଆଶୀର୍ବାଦର ପାତ୍ର କରି ଗଢ଼ିବ । ଏହି ମର୍ମରେ ନନ୍ଦକିଶୋର କହିଛନ୍ତି :

'ବିଶ୍ୱାସ ଅଟଳ ଧର୍ମମୂଳ ଭିତ୍ତି
ପ୍ରୀତି ସ୍ୱଧର୍ମ ସାଧନା ।' ( ପଲ୍ଲୀଚିତ୍ର )

ମଣିଷର ସାମାଜିକ ଓ ସାଂସ୍କୃତିକ ଅଗ୍ରଗତିର ପୃଷ୍ଠଭୂମିରେ ପ୍ରେମର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହା ଦ୍ୱିବିଧ : ଗୋଟିଏ ଉଦାର ପ୍ରେମ ଓ ଅନ୍ୟଟି ସାଂସାରିକ ପ୍ରେମ (ନାରୀ-ପୁରୁଷର) । ଉଦାର ପ୍ରେମରେ ମଣିଷର ବିଶ୍ୱ ସହିତ, ପ୍ରକୃତି ସହିତ, ଈଶ୍ୱରଙ୍କ ସହିତ ସମ୍ବନ୍ଧ ଜଡ଼ିତ । ଫ୍ରଷ୍ଟ ସେଥିପାଇଁ କହନ୍ତି- 'We love the things, We love for what they are.' କିନ୍ତୁ ସାଂସାରିକ ପ୍ରେମ ସମ୍ପର୍କରେ ସେ ବିସ୍ତୃତ ଚର୍ଚ୍ଚା କରିଛନ୍ତି । ଏଥିରେ ଭାବ ପ୍ରବଣତା ନାହିଁ । ଜୀବନ ପ୍ରତି ବାସ୍ତବ ଦୃଷ୍ଟିକୋଣରୁ କବି ସବୁ କଥା ବିଚାର କରିଛନ୍ତି । 'West Running Brook' କବିତାରେ ସେ ଏକ ଯୁବ ଦମ୍ପତିଙ୍କ ପ୍ରୀତି ଓ ଘୃଣା ସମ୍ପର୍କରେ (Love - hate relationship) ଚିତ୍ର ଆଙ୍କିଛନ୍ତି ।

ସୁଖମୟ ବୈବାହିକ ଜୀବନରେ ଏହାର ଏକ ସୁସ୍ଥ ଭୂମିକା ନିହିତ ବୋଲି ତାଙ୍କର ଧାରଣା । 'The Subverted Flower' କବିତାରେ ଝିଅଟିଏ ନିଜ ପ୍ରେମିକର ନିବିଡ଼ ଆକର୍ଷଣ ଓ ଦେହଜ କାମନାକୁ ପଶୁଭାବନା ବୋଲି କହିଛି । ପରିଶେଷରେ ସେ ନିଜେ ଜୀବନର ଜାନ୍ତବ, (Animalistic) ଦିଗ ପ୍ରତି ସବୁଜ ସଂକେତ ପ୍ରଦାନ କରିଛି । ଏହିଭଳି ବହୁ କବିତାରେ ଫ୍ରଷ୍ଟଙ୍କର ପ୍ରେମ ପ୍ରତି ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ହୋଇ ଉଠିଛି । ନନ୍ଦକିଶୋର ମଧ୍ୟ ବହୁସ୍ଥଳରେ ସ୍ୱୀୟ ଦାମ୍ପତ୍ୟପ୍ରେମର ମଧୁର ସ୍ମୃତିଚାରଣ କରିଛନ୍ତି । କିନ୍ତୁ ପ୍ରେମର ବାସ୍ତବ ସମସ୍ୟା ପ୍ରତି ଅଂଗୁଳି ନର୍ଦ୍ଦେଶ କରିବାକୁ ଭୁଲି ନାହାନ୍ତି । ଯଥା :

ସଂସାରର ପ୍ରେମ ଆବିଳ ଭାଇ
ନିର୍ମଳ ପ୍ରେମ ଏ ଜଗତେ ନାହିଁ । XXX
ସଂଶୟ କଣ୍ଟକ ପ୍ରେମ ସୁମନ
କରିଅଛି ଘନ ଭାବେ ଆଛନ୍ନ । ( କାକ ବାରତା )

ନନ୍ଦକିଶୋର ଓ ଫ୍ରଷ୍ଟଙ୍କ କବିତାର ତୁଳନାତ୍ମକ ଅଧ୍ୟୟନବେଳେ ଓଡ଼ିଶା ଓ ଆମେରିକାର ଗ୍ରାମ୍ୟ ଜୀବନ, ଭଗବଦ୍ ବିଶ୍ୱାସ, ପ୍ରେମ ଭାବନା ଭଳି ବହୁ ପ୍ରସଂଗ ଆମକୁ

ପ୍ରଲୁବ୍ଧ କରିବ ।

ଏଠାରେ ଏହା ଏକ ପ୍ରାଥମିକ ଓ ସଂକ୍ଷିପ୍ତ ପ୍ରୟାସ ମାତ୍ର । ଦୁଇ କବିଙ୍କ ଜୀବନ ଓ କାବ୍ୟ ସାଧନା ହଜାର ହଜାର ମାଇଲ ବ୍ୟବଧାନରେ ଗଢ଼ି ଉଠିଥିଲେ ହେଁ ପାରିବେଶିକ ଓ ସାଂସ୍କୃତିକ ଭିନ୍ନତା ସତ୍ତ୍ୱେ ଦୁହିଁଙ୍କ କାବ୍ୟାଦର୍ଶ ମଧ୍ୟରେ ଏକ ଗଭୀର ସାଦୃଶ୍ୟ ଲକ୍ଷ୍ୟ କରାଯାଇଥାଏ । □

# ଋତୁବର୍ଣ୍ଣନ ପରମ୍ପରାରେ ନନ୍ଦକିଶୋରଙ୍କର ଚୁମ୍ବକୀୟ ଶକ୍ତି

◻ ଆଚାର୍ଯ୍ୟ ଭାବାନନ୍ଦ

୧୪୯୮ ଖ୍ରୀଷ୍ଟାବ୍ଦରେ ଭାସ୍କୋଡାଗାମା ପୂର୍ବ ସହିତ ୟୁରୋପର ସଂଯୋଗ ସୃଷ୍ଟି କଲେ ସାମୁଦ୍ରିକ ପଥରେ । ଊନବିଂଶ ଶତାବ୍ଦୀର ପ୍ରାକ୍ କାଳରେ ବ୍ରିଟିଶ ଶାସକମାନେ ଭାରତୀୟ ମହାଦେଶର ଅଧିକାଂଶ ସ୍ଥାନରେ ତାଙ୍କର କର୍ତ୍ତୃତ୍ୱ ଜାହିର୍ କଲେ । ଊନବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଭାରତରେ "ଇଂରେଜ ମଡେଲ"ର ବିଦ୍ୟାଳୟ ଓ ମହାବିଦ୍ୟାଳୟ ମାନ ପ୍ରତିଷ୍ଠା ପାଇସାରିଥିଲା । ତେଣୁ ସେ କାଳର ଭାରତବର୍ଷ ଓ ଓଡିଆ ଭାଷା ଭାଷୀ ଅଂଚଳରେ ମଧ୍ୟବିତ୍ତ ବା ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଲୋକେ ଯେ କେବଳ ଇଂରାଜୀ ଭାଷା ସାହିତ୍ୟ ଅଧ୍ୟୟନ କରିଥିଲେ ତାହା ନୁହେଁ - ଚିନ୍ତନ, ବିଶ୍ୱାସ ଓ କର୍ମ ପ୍ରେରଣାରେ 'ଇଂରେଜୀ' ଭାବଧାରାକୁ ମଧ୍ୟ ନିଜର କରି ନେଇଥିଲେ । ପଶ୍ଚିମ ଭୂଖଣ୍ଡରୁ ଆସୁଥିବା ଭାବଧାରା ପ୍ରବଳ ବେଗରେ ମାଡି ଆସୁଥିବା ବେଳେ ସ୍ଥାନୀୟ ସଂସ୍କୃତି, ବିଶ୍ୱାସ, ଧର୍ମଧାରଣା, ଚିନ୍ତନ ଓ ସାହିତ୍ୟ ତାକୁ କେତେ ପରିମାଣରେ ଆତ୍ମସାତ୍ କରିଥିବା ବେଳେ, ଅନେକ କ୍ଷେତ୍ରରେ ତାହା ନବ୍ୟ ଶିକ୍ଷିତଙ୍କର ଆଦର୍ଶ ହୋଇ ପଡିଲା । ତେଣୁ ପାରଂପରିକ ଭାଷା ସାହିତ୍ୟର ବିଦ୍ଧାଣୀମାନେ ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ବିଂଶ ଶତାବ୍ଦୀର ମଧ୍ୟଭାଗ (୧୯୪୭ରେ ଭାରତ ସ୍ୱାଧୀନ ହେଲା, ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା) ଭିତରେ ତାଙ୍କର ରଚନାବଳୀ କେତେ ପରିମାଣରେ 'ପଶ୍ଚିମ ଭାବଧାରା' ଦ୍ୱାରା ଆକ୍ରାନ୍ତ ବା କେତେ ପରିମାଣରେ ପ୍ରାଚ୍ୟ ଆଦର୍ଶ ଦ୍ୱାରା ଅନୁପ୍ରାଣିତ ତାହା ପର୍ଯ୍ୟାଲୋଚନା କଲେ ହିଁ ସେ କାଳର ସାହିତ୍ୟିକମାନଙ୍କର 'ଭାବାବେଗ'କୁ ଧରିବା ସମ୍ଭବ ହୁଏ । ଏହି ଧରଣର ସାହିତ୍ୟିକମାନଙ୍କ ମଧ୍ୟରୁ ଯେଉଁମାନଙ୍କୁ ଆମେ 'ସୃଷ୍ଟିଧର୍ମୀ' ବା 'ସର୍ଜନାତ୍ମକ ପ୍ରତିଭା'ର ଅଧିକାରୀ ବୋଲି କହିଆସିଛୁ, ସେମାନେ ସାଧାରଣତଃ ସେମାନଙ୍କର ଭାବାବେଗ ଏପରି ଭାବରେ ବ୍ୟକ୍ତ କରିପାରନ୍ତି, ଯାହା ଅନ୍ୟମାନେ ଅନୁଭବ କରୁଥିଲେ ମଧ୍ୟ ତା'ର ଅଭିବ୍ୟକ୍ତି

ପ୍ରଦାନ କରିପାରନ୍ତି ନାହିଁ । ଏହି 'ସୃଷ୍ଟିଧର୍ମୀ ପ୍ରତିଭା' ସାଧାରଣତଃ ଅଧ୍ୟୟନ ବା ଶିକ୍ଷାରୁ ହୋଇ ନଥାଏ; ବରଂ ଏହା ବ୍ୟକ୍ତିର 'ଅନ୍ତର୍ନିହିତ ଶକ୍ତି'ରୁ ହିଁ ଜାତ ହୋଇଥାଏ । ଏହାକୁ ସମୀକ୍ଷା କରୁଥିବା ଲେଖକମାନେ ତେଣୁ କବିଙ୍କର ଶୈଳୀ, କବିତାର ଉପାଦାନ ଓ ତା'ର 'ଚୁମ୍ବକୀୟ ଶକ୍ତି' (ଚାରିସ୍‌ମେଟିକ୍ ପାୱାର୍)କୁ ବିଶ୍ଳେଷଣ କରିବା ଆବଶ୍ୟକ ହୋଇଥାଏ । ସାଧାରଣତଃ 'ରାଜନୀତିଜ୍ଞ ବ୍ୟକ୍ତି'ଙ୍କର ଅନୁଶୀଳନରେ ଏହି 'ଚୁମ୍ବକୀୟ ଶକ୍ତି' ସମ୍ପର୍କରେ ସମୀକ୍ଷକମାନେ ବିଚାର ବିଶ୍ଳେଷଣ କରିଥାନ୍ତି । କିନ୍ତୁ 'କବିକୃତି' ବା ସୃଷ୍ଟିଧର୍ମୀ ସାହିତ୍ୟ ଆଲୋଚନା କ୍ଷେତ୍ରରେ କେହି ଏହି 'ଚୁମ୍ବକୀୟ ଶକ୍ତି' ଅନୁସନ୍ଧାନ କରିଥିବା କଥା ମୋ ଦୃଷ୍ଟିକୁ ଆସିନାହିଁ । 'ଚୁମ୍ବକୀୟ ପ୍ରତିଭା' (ଚାରିସ୍‌ମେଟିକ୍ କ୍ୱାଲିଟି) ଯେ କବିକୃତିରେ ଆବିଷ୍କାର କରିହେବ ଏଥିରେ ମୋର ସନ୍ଦେହ ନାହିଁ । ତେଣୁ ଓଡ଼ିଆ ସାହତ୍ୟରେ ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରୁ ବିଂଶ ଶତାବ୍ଦୀର ପ୍ରଥମ ଦଶକ ମଧ୍ୟରେ ଯେଉଁ 'ସୃଷ୍ଟିଧର୍ମୀ ରଚନା' ଲିପିବଦ୍ଧ ହୋଇଛି, ସେହି ଉପାଦାନକୁ ବିଶ୍ଳେଷଣ କଲେ ମନେ ହୁଏ ରାଜନୀତି, ସମାଜ ନୀତି, ଅର୍ଥନୀତି କ୍ଷେତ୍ରରେ ୱେବର, ମାର୍କ୍ସ, ଡ଼ର୍‌କ୍‌ହାଏମ ଓ ଆଡ଼ାମ୍ ସ୍ମିଥ୍ ଯେଉଁ 'ଆଧୁନିକତା'ର ସ୍ୱପ୍ନ ଦେଖୁଥିଲେ ସେ 'ଆଧୁନିକତା' ଭାସ୍କୋଡ଼ାଗାମାଙ୍କ ସମୟରୁ ବିଂଶ ଶତାବ୍ଦୀର ପ୍ରଥମ ଦଶକ ପର୍ଯ୍ୟନ୍ତ ଯେଉଁମାନଙ୍କ ଜରିଆରେ ଓଡ଼ିଆ ସାହିତ୍ୟକୁ ଆସିଛି, ତା'ର କଳନା କଲେ, ମନେହେଉଛି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନନ୍ଦକିଶୋର ସେହିଭଳି 'ଚୁମ୍ବକୀୟ ଶକ୍ତି'ର ଅଧିକାରୀ ଥିଲେ ।

ଏଠାରେ ସେହି 'ଶକ୍ତି' ଓ 'ପ୍ରତିଭା'ର ବିଶ୍ଳେଷଣ ପାଇଁ ନନ୍ଦକିଶୋରଙ୍କର ଛ'ଟି ମାତ୍ର ଋତୁ ବର୍ଣ୍ଣନ କବିତାକୁ ଗ୍ରହଣ କରାଯାଇଛି । ଏହାର ମୋଟାମୋଟି କାଳ ହେଉଛି ଊନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ସନ୍ଧିକ୍ଷଣରେ ଥିବା ତିନୋଟି ବର୍ଷ । ଏଠାରେ ସ୍ମରଣ କରିବାକୁ ହେବ ଯେ ଭାରତବର୍ଷର ସଂସ୍କୃତ ସାହିତ୍ୟରେ ଓ ଓଡ଼ିଶାର 'ରୀତି କାବ୍ୟ' ବା 'ଭଂଜୀୟପରମ୍ପରା'ର କବିକୃତିରେ 'ଋତୁବର୍ଣ୍ଣନ' ସଂପର୍କରେ ଯେଉଁ ''ଶୈଳୀ, ଉପାଦାନ ଓ ଚୁମ୍ବକୀୟ ଶକ୍ତି'' ରହିଛି, ତାହାଠାରୁ ନନ୍ଦକିଶୋରଙ୍କର ଋତୁବର୍ଣ୍ଣନ ସମ୍ପୂର୍ଣ୍ଣ ଭିନ୍ନ ମାର୍ଗରେ ଯାଇଛି । ସଂସ୍କୃତ ସାହିତ୍ୟ ଓ ଇଂରାଜୀ ପରମ୍ପରାରେ ଏହି ଶୈଳୀ କ୍ଲିଷ୍ଟ ଓ ବ୍ୟାକରଣାଭିମୁଖୀ ଓ ଉପାଦାନ ସାଧାରଣତଃ ଆଦର୍ଶ ପୁରୁଷାନୁରକ୍ତ, ଅଭିଜାତ ସଂପ୍ରଦାୟର ''ପ୍ରେମ, ବିରହ'' ଓ ''ନୈସର୍ଗିକ'' ପ୍ରକୃତି

ବର୍ଣ୍ଣନାରେ ମୁଖର । ଅନ୍ୟଭାଷାରେ କହିଲେ ଏହା 'ପ୍ରକୃତିର ଉପାସନା' ଓ 'କାମସୂତ୍ର' ପରମ୍ପରାର ଦାୟାଦ । ଇଂରାଜୀ ସାହିତ୍ୟରେ (ସେ କାଳରେ) ଯେଉଁ ''ଋତୁ ବର୍ଣ୍ଣନ'' ପର୍ଯ୍ୟାୟର କବିତା ସବୁ ରଚନା କରାଯାଇଛି (ଏ ସଂପର୍କରେ ଇଂରାଜୀ ଭାଷା ଓ ସାହିତ୍ୟର ଅଧ୍ୟାପକ ତୁଳନାତ୍ମକ ଅଧ୍ୟୟନ କରିପାରନ୍ତି) ତାହାର ଶୈଳୀ, ଉପାଦାନ ଓ ଚୁମ୍ବକୀୟ ଶକ୍ତି ମଧ୍ୟରେ ସରଳ ଭାଷାର ବ୍ୟବହାର, ସାଧାରଣ ମଣିଷର ଜୀବନ ଯାତ୍ରା ଓ ପ୍ରକୃତିର 'ସ୍ୱାଭାବିକ' ବର୍ଣ୍ଣନର ଭାବଧାରା ଦେଖିବାକୁ ମିଳେ । ତେଣୁ ଋଣାଅଧିକେ 'ନନ୍ଦକିଶୋର' ଏହି ପାଶ୍ଚାତ୍ୟଧାରାର ସମାନ୍ତରାଳ ପ୍ରତିଭା । ଓଡ଼ିଆସାହିତ୍ୟରେ କିନ୍ତୁ ସେ ଧାରାର ନନ୍ଦକିଶୋର ଏକ ବ୍ୟତିକ୍ରମ ତଥା ଅନନ୍ୟ ।

ଏହି ଛ'ଟି ଋତୁବର୍ଣ୍ଣନର କବିତାରେ ତେଣୁ କବି ତାଙ୍କର ସମୟ ଓ ପରିବେଶ କିପରି ତାଙ୍କ ଚିନ୍ତା, ବିଶ୍ୱାସ ଓ ଧର୍ମ ପ୍ରେରଣା ଉପରେ ପ୍ରଭାବ ବିସ୍ତାର କରିଛି, ତା'ର ସ୍ୱତଃସ୍ଫୂର୍ତ୍ତ ବର୍ଣ୍ଣନା ପ୍ରଦାନ କରିଛନ୍ତି । ଏଠି 'କାମସୂତ୍ର'ର ପରମ୍ପରା ନାହିଁ, କିମ୍ବା 'ରୀତିବାଦ'ର ଅହମିକା ନାହିଁ ବା ଭକ୍ତି-ବିହ୍ୱଳ ପ୍ରକୃତିର ଉପାସନା ନାହିଁ, ଅଛି ଗ୍ରାମ୍ୟ ଜୀବନରେ ଋତୁଚର୍ଯ୍ୟାର ପ୍ରଭାବ : ଯାହା କବିଙ୍କୁ ଉପାଦାନ ଯୋଗାଇଛି ଓ ଚୁମ୍ବକୀୟ ପ୍ରତିଭା ଜରିଆରେ ସେ ସେହି ପ୍ରତିଭାର 'ଶକ୍ତି'କୁ ଉନ୍ମୋଚିତ କରିଛନ୍ତି । 'ଗ୍ରୀଷ୍ମ'ଠାରୁ 'ବସନ୍ତ' : ଏହି ଛ'ଟି କ୍ଷୁଦ୍ର କବିତାରେ ସେ ଯେଉଁ ବର୍ଣ୍ଣନା ପ୍ରଦାନ କରିଛନ୍ତି, ତାହା ସଂକ୍ଷିପ୍ତ ହେଲେ ମଧ୍ୟ ପାଠକ/ପାଠିକାଙ୍କ ମନରେ ଏକ 'ବିରାଟ ପୃଥିବୀ'ର ଚିତ୍ରକୁ ଉତ୍‌ଥାପିତ କରିଥାଏ । ନିମ୍ନୋକ୍ତ କେତୋଟି ପଙ୍‌କ୍ତି ଜରିଆରେ ତାଙ୍କର ସେହି 'ଚୁମ୍ବକୀୟ ଶକ୍ତି'ର ସୂଚନା ଦିଆଯାଉଛି ।

ଗ୍ରୀଷ୍ମ :

ଏହିପରି କେତେ ଆର୍ଦ୍ଦୋଳି, ଜଞ୍ଜାଳ
 ସହଇ କୃଷକ ଭାଇ,
କଳା କୁଡ଼ିଆ ଯେ କଳଙ୍କ କୁଡ଼ିଆ
 କହିଲେ ସରଇ ନାହିଁ । X X X

ରାତି ପାହାନ୍ତାରୁ ଦୁଃଖୀ ପଲ୍ଲୀବାସୀ
ଆମ୍ବ ସାଉଁଟନ୍ତି ଯାଇ,
କିଂଚିତରେ ତୁଣ୍ଡେ ସୁଆଦ ପାଆନ୍ତି
କିଣିବାକୁ ଧନ କାହିଁ ?

ବର୍ଷା :

ଏହିପରି ସିନା ଏକ ରକ୍ତ, ମାଂସ
ଅସ୍ଥିରେ ଗଠିତ ଜନ,
କେହି କେହି ସାଧୁ ସୁଜନ ହୁଅନ୍ତି
କେହି ବା ପାପୀ ଦୁର୍ଜନ ।

X X X X X

ନିଶୀଥର ବାତ ବହିଆଣେ ଗୀତ
ଶୁଭେ ନିଶା ଗରଜନ,
ଗାଆଁ ତଳ ଦଣ୍ଡା ଆଡୁ ଶୁଭୁଥାଏ
ବିକଟ ଭେରେଣ୍ଡା ସ୍ୱନ ।

ଶରତ :

ଯାଏ ଯେଉଁ ବୀରେ ନିଜ ଭୂଜବଳେ
ଉତ୍କଳେଶ ପଦ ତଳେ,
ନତ କରାଇଲେ ଆଜି ସେ ଜାତିର
କି ପତନ କାଳବଳେ ।
କାଂଚି, ସେତୁବନ୍ଧେ ରାମେଶ୍ୱରେ ପୁଣି
ଗଙ୍ଗାକୂଳେ ଗୌଡ଼ ଦେଶେ,

ପ୍ରୋଥିତ କଲେ ଯେ ବିଜୟ ନିଶାଣ

ହେଲେ କିବା ଅବଶେଷେ ।

x x x x x

ସଭ୍ୟ ଦେଶେ ପରା ଗୃହସ୍ଥ ଗୃହିଣୀ

ଅତିଥିଙ୍କ ରାଜରାଣୀ,

ଏ ଦେଶେ ନିମିତ୍ତେ ନିମନ୍ତ୍ରଣକାରୀ

କରଇ କାକୁତି ବାଣୀ ।

ଉପରୋକ୍ତ ଏହି କେତୋଟି ଉଦ୍ଧୃତାଂଶରେ 'ଋତୁ ବର୍ଣ୍ଣନ'ରେ ନନ୍ଦକିଶୋରଙ୍କର ଚୁମ୍ବକୀୟ ଶକ୍ତି 'ଦାରିଦ୍ର୍ୟ ଜନିତ ଅସହାୟତା' କୁ ପ୍ରଧାନ 'ଉପାଦାନ' ଭାବରେ ଗ୍ରହଣ କରିଛି । ସରଳ ଭାଷାରେ (କଥୋପକଥନର ଭାଷା) ଏକ ବିସ୍ତୃତ ଚିତ୍ରପଟ (କ୍ୟାନଭାସ) ଭିତରେ ପ୍ରକୃତିର ବର୍ଣ୍ଣନା ଅନ୍ତରାଳରେ 'ଦାରିଦ୍ର୍ୟ ଜନିତ ଅସହାୟତା' ତାଙ୍କ ଚୁମ୍ବକୀୟ ପ୍ରତିଭା, ଯାହା କବି ଅନ୍ତରର ଅନ୍ତର୍ନିହିତ ଶକ୍ତିରୁ ଜାତ ।

ସେହିପରିଭାବରେ ହେମନ୍ତ, ଶୀତ, ବସନ୍ତ କବିତାରୁ କେତୋଟି ପଙ୍କ୍ତି ଉଦ୍ଧାର କରାଯାଉଛି ।

ହେମନ୍ତ :

ଦେଶ ହିତ ଅର୍ଥେ ଏସବୁ ଭିଆଣ

ହୋଇଥିଲା ପୂରା କାଳେ,

ଏ ଦେହ ଆତ୍ମାର ପୂତ ବାସଗୃହ

ବିସ୍ମୃତ ହେଲା ତା ତଳେ । x x x

ଭାଇ ଭାଇ ମଧ୍ୟେ ଭେଦ ବିଚାରିଲେ

ଏହି ପରି ହୁଏ ଦଣ୍ଡ,

ଜାତି ଭେଦ ଯୋଗୁଁ ଏ ଭାରତ ଦେଶ

ପରାଧୀନ ଖଣ୍ଡ ଖଣ୍ଡ ।

ଶୀତ :

ଦିନରେ ଚଢ଼େଇ, ରାତ୍ରେ ବଣ ପଶୁ

ଖାଆନ୍ତି ପାଚିଲା କ୍ଷେତ,

କ୍ଷେତ ନୁହେଁ ଦୁଃଖୀ କୃଷକ କୁଟୁମ୍ବ

ଜୀବନ-ନାଟିକା ସେ ତ ।

ବସନ୍ତ :

ଜୀବନ-ସଂଗ୍ରାମେ ଯୋଗ୍ୟତମ ଜୟୀ

ହୁଏ ସିନା ଏହିପରି,

ଜଡ଼-ଉଦ୍ଭିଦରେ, ପ୍ରାଣୀଜଗତରେ

ଶକ୍ତିହୀନ ଯାଏ ସରି । xxx

ବଙ୍ଗ ଦେଶବାସୀ ଏହି ଗୋପାଳଙ୍କୁ

ଦେଖିଣ ଭାବନ୍ତି ମନେ :

'ଓଡ଼ିଆ ବେହେରା ମାନଙ୍କର ଦେଶ

ଭଦ୍ରଲୋକ ନାହିଁ ଜଣେ ।'

ତେଣୁ ନନ୍ଦକିଶୋରଙ୍କ 'ଋତୁ ବର୍ଣ୍ଣନ' ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପରଂପରାକୁ ତ୍ୟାଗ କରି ଜନଜୀବନର 'ଅସହାୟତା'କୁ ଉପାଦାନ ରୂପେ ଗ୍ରହଣକରି ମୁଖ୍ୟତଃ 'କୁସୁପୁର' ଗ୍ରାମ/ ଅଞ୍ଚଳରୁ ଯେଉଁ ଅନୁଭୂତି ଓ ଅଭିଜ୍ଞତା ଅର୍ଜନ କରିଛି, ତାକୁ ଭିତ୍ତିକରି ଛ'ଟି ଋତୁର ପ୍ରରିପ୍ରେକ୍ଷୀରେ ନିଜସ୍ୱ ମହିମାରେ ଉଦ୍‌ଭାସିତ କେତୋଟି କବିତା । ଋତୁ ଗୁଡ଼ିକ ଏଠାରେ ପରିବେଶ ଓ ବର୍ଣ୍ଣନା ଗୁଡ଼ିକ ଜନଜୀବନର 'ପାଠ'। କବିଙ୍କର ଚୁମ୍ବକୀୟ ଶକ୍ତି ସେଗୁଡ଼ିକୁ ଓଡ଼ିଶାର ସାର୍ବଜନୀନ ଜୀବନଧାରରେ ରୂପାନ୍ତରିତ କରିଛି । ଓଡ଼ିଆ ସାହିତ୍ୟରେ ଋତୁ ଗୁଡ଼ିକର ଏପରି ଅଭିନବ ଅଭିବ୍ୟକ୍ତିର ଦୃଷ୍ଟାନ୍ତ ବିରଳ । □

# ବର୍ଷା ଓ ବିଷାଦ : କବି ନନ୍ଦକିଶୋର

## ▫ ପ୍ରତିଭା ଶତପଥୀ

କବି ନନ୍ଦକିଶୋରଙ୍କ କାବ୍ୟକୃତିଗୁଡ଼ିକ ମୁଖ୍ୟତଃ ୭/୮ ବର୍ଷ ମଧ୍ୟରେ ସଂରଚିତ । ଯଥାର୍ଥରେ ଆଲୋଚକ ଗବେଷକ ଡଃ ନଟବର ସାମନ୍ତରାୟ କହନ୍ତି, ''ସ୍ଵୁତଃ ନନ୍ଦକିଶୋରଙ୍କ ସର୍ବଶ୍ରେଷ୍ଠ କବି ପ୍ରତିଭାର ବିକାଶକାଳ କେବଳ ୫ଟି ବର୍ଷ (୧୮୯୮-୧୯୦୩) ମାତ୍ର ।'' (ଓଡ଼ିଆ ସାହିତ୍ୟର ଇତିହାସ / ପୃ: ୫୯୦) । ୧୮୯୮ ରେ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ତାଙ୍କର 'ପଲ୍ଲୀଚିତ୍ର' । 'ନିର୍ଝରିଣୀ' (୧୯୦୦), 'ବସନ୍ତ-କୋକିଳ' (୧୯୦୧), 'ଚାରୁଚିତ୍ର' (୧୯୦୨)ରେ ପ୍ରକାଶିତ 'ଜନ୍ମଭୂମି', 'ସଂଧ୍ୟା ସଂଗୀତ', 'ପ୍ରଭାତ ସଂଗୀତ', 'ନିର୍ମାଲ୍ୟ' ଓ 'କୃଷ୍ଣକୁମାରୀ' ୧୮୯୮ ରେ 'ସମ୍ବଲପୁର ହିତୈଷିଣୀ' ଓ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ।

ରାଧାନାଥ ଯୁଗର ଏକ ସଫଳ କବି ନନ୍ଦକିଶୋରଙ୍କର ଦୃଷ୍ଟି ଫେରିଛି ପଲ୍ଲୀ ପ୍ରକୃତି ଦିଗକୁ । ପଲ୍ଲୀ ଜୀବନଧାରା ସହ, ପଲ୍ଲୀ ପ୍ରକୃତିର ସୂକ୍ଷ୍ମ ନିରୀକ୍ଷଣ ଭିତରେ ବର୍ଷା ହିଁ ତାଙ୍କ ମାନସକୁ ଆବୋରି ବସିଛି । ବର୍ଷା ଯଦିଓ କବିପ୍ରାଣରେ ବିଷାଦ ଉଦ୍ରେକ କରିବାର ଏକ ପ୍ରଧାନ ଉପାଦାନ, ତଥାପି ପ୍ରକୃତିର ବିଭିନ୍ନ ଦୃଶ୍ୟ ଓ କାଳଭେଦରେ ସ୍ଵତଃ ବିଷାଦ ତାଙ୍କୁ କବଳିତ କରିଛି । ଜଣେ ଜୀବନବାଦୀ କବି ଭାବରେ ଜୀବନର ଅନ୍ଧକାର, ନିଃସଂଗତା ଓ ବ୍ୟାକୁଳତା ତାଙ୍କୁ ଗଭୀରଭାବେ ଆଲୋଡ଼ିତ କରିଛି । ଏହି ପଲ୍ଲୀପ୍ରକୃତିର ମନଲୋଭା ଦୃଶ୍ୟ ଓ ଆବେଗ-ସଂଚାରୀ ଭାବମଧ୍ୟରେ କବି ସର୍ବତ୍ର ବର୍ଷାଋତୁ, ବାରିଧାରା ଆଦିକୁ ଗୁରୁତ୍ୱ ଦେଇଛନ୍ତି । ଏପରିକି 'ନିର୍ଝରିଣୀ' ତାଙ୍କ କବିତା ପୁସ୍ତକର ଶୀର୍ଷକ । 'ବର୍ଷା', 'ନବବର୍ଷା ଭାବନା', 'ଅଦିନ ମେଘ' ଆଦି ତାଙ୍କର କବିତାର ଶୀର୍ଷକ । ମେଘକୁ ନେଇ ତାଙ୍କର ଲୋକଗୀତର ସଂଯୋଜନା - ''ମେଘ ବରଷିଲା ଟପର ଟପର କେଶୁର ମାଇଲା ଗଜା'' ଠାରୁ ''ହୁକା ବାରି ବିଲେ ଫୁଟି ଉଠେ ଛତୁ, ଘନଘୋର ନୀର ପାଇ'', ''ଭୋଦୁଅ ମାସର ଜହ୍ନିଫୁଲ ଗୀତ'' ଠାରୁ ''ଖରା କରୁଅଛି, ମେଘ

ବରଷୁଛି/ ବିଜୁଆ ପୁଅର ବାହା'', କେଉଁଠି ଶିଶୁ ମାନେ ଧୂଳି ଖେଳ ଛାଡ଼ି ମେଘ ଦେଖି ଘରକୁ ଧାଇଁଗଲା ବେଳକୁ ବର୍ଷା ତାଙ୍କୁ ଅଧ ବାଟରେ ଟପି ଯାଉଛି--ଏ ସବୁର ମନୋଜ୍ଞ ଚିତ୍ର ତାଙ୍କ କବିତାର ଛତ୍ରେ ଛତ୍ରେ ପ୍ରକଟିତ । ନଈ, ପୋଖରୀ, ପାଟ, ଢୋର, ଆମ୍ବ ତୋଟା ଓ କ୍ଷେତ ମାଳ ଘେରି ବୃକ୍ଷବନ୍ଧୁ ବର୍ଷା ଯେତେବେଳେ ଉଦ୍ଦାମ ନୃତ୍ୟ କରେ, ଭାବୁକ କବିଙ୍କ ହୃଦୟ ଆବେଗ ଓ ଆକୁଳତାରେ ଭାରି ହୋଇଆସେ । ଜୀବନର ଚଲାପଥରେ ଯାହା ମିଳିନାହିଁ, ହଜି ଯାଇଛି ବା ଦୂରରେ ଅଛି, ତାହା ପାଇଁ କବି ଅନ୍ତର କାନ୍ଦିଉଠେ, ସ୍ମୃତି ହୋଇ ଉଠେ ଜୀବନ୍ତ ।

ଜୀବନର ସକଳ ବିଭାବକୁ କେନ୍ଦ୍ରାୟିତ କରି କବି ଦୃଷ୍ଟିରେ ଫୁଟି ଉଠେ ବିଷାଦର ଚିତ୍ରପଟ । ମେଘକୁ ସମ୍ପର୍କିତ କରି କବିଙ୍କ ବିଷାଦବାଦୀ କାବ୍ୟମାନସର ଚିତ୍ର ପୁଣି 'ନିର୍ଝରିଣୀ'ରେ ସର୍ବଦା ପ୍ରତିଫଳିତ ହୁଏ । ଯଦିଓ ତାଙ୍କ ବିଷାଦ ଦୃଷ୍ଟିଟି ସକଳ ଦୃଶ୍ୟ ଓ ଦର୍ଶନରେ ପ୍ରକଟିତ ତଥାପି ବର୍ଷା ସହ ଏହି ବିଷାଦର ନିବିଡ଼ ଯୋଗାଯୋଗ ବହୁଳ ଭାବେ ଲକ୍ଷ୍ୟ କରିହେବ । 'କାକ ବାରତା'ରେ କବିଙ୍କ ସଂସାର ବିରାଗୀ ଚିତ୍ର ପରିଦୃଷ୍ଟ ହୁଏ । ସେଠାରେ ପ୍ରେମ,ଜ୍ଞାନ, ଯୌବନ, ଏପରିକି ପ୍ରକୃତିର ବିଭିନ୍ନ ଶୋଭା ମଧ୍ୟରେ ବି ବିଷର୍ଣ୍ଣତା ରୂପ ପରିଗ୍ରହଣ କରି ଠିଆ ହୋଇଯାଏ । ଋତୁଚକ୍ରର ଆବର୍ତ୍ତନରେ ପ୍ରକୃତିରେ ଏତେ ଶୋଭାସମ୍ଭାର, ମାତ୍ର କବିଙ୍କୁ ଆକୃଷ୍ଟ କରେ ବର୍ଷା ରାତି । ହୁଏତ ବର୍ଷା ରାତିରେ ଆକାଶ କାନ୍ଦେ, ପୃଥିବୀ ଲୁହରେ ଜୁଡୁବୁଡୁ ହୋଇଯାଏ । ତେଣୁ ବର୍ଷା ସବୁବେଳେ ବିଷାଦର କାରଣ ହୁଏ । ବର୍ଷାର ଘନଘୋର ନିନାଦ ଓ ଛଳଛଳ ଛନ୍ଦ ଅତୀତକୁ ସ୍ମୃତିପଟରେ ଉଜ୍ଜୀବିତ କରେ, କବି ବିଷାଦରେ ନିମଜ୍ଜିତ ହୁଅନ୍ତି ।

ଆକାଶ ମାର୍ଗରେ ବର୍ଷା ଘୋଟି ଆସେ । ବଜ୍ର ବିଦ୍ୟୁତ୍ ଗର୍ଜି ଉଠେ, ନାଚିଯାଏ । ଖଳ ଖଳ ବାରିଧାର ଖସିପଡ଼େ । ଆକାଶ ଆକାଶ ବର୍ଷାଜଳ । କ୍ୱଚିତ୍ ବା କୁଆପଥର ଅଜାଡ଼ି ପଡ଼େ । କିପରି ଏକ ପୁଲକ ସଂଜାତ ହୁଏ ଶରୀର ଓ ମନ ମଧ୍ୟରେ । କବିଙ୍କ ସ୍ନେହ ପାଗଳ ହୃଦୟ ବର୍ଷାରେ ସ୍ପନ୍ଦିତ ହୋଇଉଠେ । ସେ ଗାଆନ୍ତି -

'ନାଚଇ ବସନ୍ତ ପୁଣି ହସଇ ଶରତ
ବରଷା ବିଷାଦେ କିନ୍ତୁ ମୋ ହୃଦୟରତ ।
ସୁନ୍ଦରୀ ବାସନ୍ତୀ ଉଷା, ଶରଦ ଯାମିନୀଭୂଷା

ବରଷା ନିଶୀଥ କିନ୍ତୁ ମୋ ହୃଦୟ ନିଧି

ହୁଅଇ ଉଦ୍‌ବେଳ ଯେବେ ବିଷାଦ ବାରିଧି ।'

('ପ୍ରଭାତ ଅବକାଶ'-ନିର୍ଝରିଣୀ)

ଜୀବନର ଅଳୀକତା, ଯୌବନର କ୍ଷଣସ୍ଥାୟିତ୍ୱ, ପ୍ରେମର ଅସଫଳ ପରିଣତି ଦେଖି କେଉଁ କବି ବା ବିଷାଦଗ୍ରସ୍ତ ନ ହେବ ? ଏହି ବିଷାଦଭାବ ଜୀବନବାଦୀ କବିର ମାନସପଟରେ ଆନନ୍ଦ ପ୍ରାପ୍ତି ନିମିତ୍ତ ଥିବା ଅଭୀପ୍ସାକୁ ହିଁ ସୂଚିତ କରେ । ସେହି ଅଭୀପ୍ସାର ପଥରେ ସାମାନ୍ୟ ପ୍ରତିବନ୍ଧକ ସହ୍ୟକରି ନେବାକୁ ସେ ଚାହେଁ ନାହିଁ । ତେଣୁ କବିଚେତନା ବିଷାଦ-ନିର୍ଜିତ ହୋଇଥାଏ । କେଉଁ ବିଶିଷ୍ଟ କବି ନିଜର କାବ୍ୟଦୃଷ୍ଟିକୁ ବିଷାଦମୁକ୍ତ କରିପାରିଛି ? କାରଣ ଏ ବିଷାଦ ମାଧ୍ୟମରେ କବି ପ୍ରକାରାନ୍ତରେ ଏକ ଆନନ୍ଦମୟ ମାନସିକତାକୁ ମନାସିବାରେ ପ୍ରୟାସୀ ହୋଇଥାଏ । □

# ଉତ୍କଳ ସମ୍ମିଳନୀ କବିଗୋଷ୍ଠୀ ଓ ପଲ୍ଲୀକବି ନନ୍ଦକିଶୋର

□ ଗୋପାଳକୃଷ୍ଣ ଶ୍ରୀଚନ୍ଦନ

ଉତ୍କଳ ସମ୍ମିଳନୀ ୧୯୦୩ରେ ପ୍ରତିଷ୍ଠିତ ହୁଏ, ବ୍ରିଟିଶମାନଙ୍କ ଅଧିକାରକୁ ଓଡ଼ିଶା ଯିବାର ଏକଶତ ବର୍ଷପରେ । ଖଣ୍ଡ ବିଖଣ୍ଡିତ ଓଡ଼ିଆ ଜାତିର ପ୍ରାଣରେ ସ୍ପନ୍ଦନ ସୃଷ୍ଟି କରେ ଦୁଇଟି ଘଟଣା : ଗୋଟିଏ 'ନଅଙ୍କ ଦୁର୍ଭିକ୍ଷ' ଓ ଅନ୍ୟଟି 'ଓଡ଼ିୟା ସ୍ୱତନ୍ତ୍ର ଭାଷା ନହେ' ସ୍ଲୋଗାନ୍ । ଉଭୟ ମନୁଷ୍ୟକୃତ । ସୁପ୍ତ ସିଂହ ଶିଶୁ ଜାଗି ଉଠିଲା । ବୀର ପ୍ରସବିନୀ ଉତ୍କଳ ଜନନୀ ଏହି ସମୟକୁ ଜନ୍ମ ଦେଲା କେତୋଟି ପୁରୁଷ ସିଂହ । ସେମାନେ ହେଲେ : ମଧୁସୂଦନ ଦାସ, ଫକୀରମୋହନ ସେନାପତି, ରାଧାନାଥ ରାୟ, ମଧୁସୂଦନ ରାଓ, ନନ୍ଦକିଶୋର ବଳ, ଗଙ୍ଗାଧର ମେହେର, ଗୌରୀଶଙ୍କର ରାୟ ପ୍ରଭୃତି । ଏମାନଙ୍କର ଚିନ୍ତା ଚେତନା ବିଜଡ଼ିତ ଥିଲା ଆବାଲ୍ୟରୁ ମାତୃଭାଷା ଓଡ଼ିଆ ଓ ମାତୃଭୂମି ଓଡ଼ିଶାର ସ୍ୱାତନ୍ତ୍ର୍ୟ ଓ ସୁରକ୍ଷା ବିଧାନ ସହ । ତେଣୁ ଏମାନେଥିଲେ କବି-ସାହିତ୍ୟିକ-ସଂପାଦକ-ସାହିତ୍ୟ ସଂଗଠକ-ଶିକ୍ଷକ.... ଆଉ କ'ଣ ବା ନୁହନ୍ତି ?

ଏମାନଙ୍କ ଦ୍ୱାରା ସୃଷ୍ଟ ସାହିତ୍ୟ ଥିଲା ଜାତୀୟବାଦୀ ସଂସ୍କାରଧର୍ମୀ : ସମକାଳୀନ ଓଡ଼ିଆଙ୍କୁ ଉଦ୍‌ବୁଦ୍ଧ କରିବାପାଇଁ, ଯେଉଁମାନେ ବିଛାଡ଼ି ହୋଇ ପଡ଼ିରହିଥିଲେ ବେଙ୍ଗଲ ପ୍ରେସିଡେନ୍‌ସି, ମାନ୍ଦ୍ରାସ୍ ପ୍ରେସିଡେନ୍‌ସି ଓ ସେଣ୍ଟ୍ରାଲ ପ୍ରଭିନ୍ସରେ ଖଣ୍ଡ ବିଖଣ୍ଡିତ ହୋଇ । ଏମାନଙ୍କର ଜାତୀୟତା ଓ ଏକତାର ଏକମାତ୍ର ସୂତ୍ରଥିଲା ଭାଷା : ଓଡ଼ିଆ ଭାଷା, ଉତ୍କଳୀୟ ସଂସ୍କୃତି : ଜଗନ୍ନାଥ ସଂସ୍କୃତି, ଯାହା ମଧ୍ୟରେ ଏକ ପୁରାଣପ୍ରସିଦ୍ଧ କ୍ରମବର୍ଦ୍ଧିଷ୍ଣୁ ବିବର୍ତ୍ତିତ ଓଡ଼ିଆ ଜାତିର ଗୌରବୋଜ୍ଜ୍ୱଳ ଇତିହାସ ଓତଃପ୍ରୋତ ଭାବେ ଜଡ଼ିତ ।

ଓଡ଼ିଶା ପ୍ରକୃତି-ସଂପଦରେ ଭରପୂର, ପଲ୍ଲୀବହୁଳ । ଓଡ଼ିଶାର ଇତିହାସ ଓ ସାହିତ୍ୟ,

ଏପରିକି ଧର୍ମ ସଂସ୍କୃତି ଏହାର ପ୍ରଭାବରୁ ମୁକ୍ତ ନୁହେଁ । ପ୍ରାକୃତିକ ଭାବେ ଓଡ଼ିଶା ନିରବଛିନ୍ନ ଥିଲା, ଭାଷା-ସଂସ୍କୃତି ଦୃଷ୍ଟିରୁ ଏକ ଥିଲା । କେବଳ ଅଭାବଥିଲା ରାଜନୈତିକ ଓ ପ୍ରସାଶନିକ ସଂହତି ଓ ଏକତ୍ୱ । ଏହି ଅଭାବକୁ ପୂରଣ କରିବାପାଇଁ ବରପୁତ୍ର ମାନଙ୍କ ଉଦ୍ୟମ ଅତୁଳନୀୟ, ବିଶେଷତଃ ଓଡ଼ିଆ ଭାଷା ସାହିତ୍ୟ ମାଧ୍ୟମରେ । ଉତ୍କଳ ସମ୍ମିଳନୀ ଏମାନଙ୍କୁ ଏକମଞ୍ଚରେ ଏକତ୍ରିତ କରିବା ପାଇଁ ଥିଲା ଏକ ଜାତୀୟ ଅନୁଷ୍ଠାନ । ଏହି କବିକୁଳ ତଥା ଏମାନଙ୍କ ପରବର୍ତ୍ତୀ ଜାତୀୟ-କବି ମାନଙ୍କ ଦ୍ୱାରା ରଚିତ ଦେଶବନ୍ଦନା ବା ଜାତୀୟ ତଥା ଦେଶାତ୍ମବୋଧ ସଂଗୀତ ଗୁଡ଼ିକ ରଚିତ ହୋଇଥିଲା ଉତ୍କଳ ସମ୍ମିଳନୀର ବାର୍ଷିକ ଓ ସ୍ୱତନ୍ତ୍ର ଅଧିବେଶନମାନଙ୍କରେ ଉଦ୍‌ବୋଧନ ଗୀତି ରୂପେ ପରିବେଷିତ ହେବା ପାଇଁ । ଓଡ଼ିଆ ସାହିତ୍ୟ ପ୍ରତି ଦୃଷ୍ଟିପାତ କଲେ ଏହାର ସତ୍ୟତା ଉପଲବ୍ଧି କରି ହୁଏ ।

ଉପର୍ଯ୍ୟୁକ୍ତ ସାମାନ୍ୟକଥନ ପରିପ୍ରେକ୍ଷୀରେ ନନ୍ଦକିଶୋରଙ୍କ ଭୂମିକା ବିଚାର୍ଯ୍ୟ । ଏ ପ୍ରସଙ୍ଗରେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ନନ୍ଦକିଶୋର ପୂର୍ବ ଜୀବନରେ ଉତ୍କଳ ସମ୍ମିଳନୀରେ ଜଣେ ବିଶିଷ୍ଟ ଉତ୍ସାହୀ ସଭ୍ୟଥିଲେ । ୧୯୦୩ ମସିହା ଅପ୍ରେଲ ମାସରେ ଖଲିକୋଟର ପୁଣ୍ୟଶ୍ଳୋକ ରାଜା ସ୍ୱର୍ଗତଃ ହରିହର ମର୍ଦ୍ଦରାଜ ଦେବ ଏବଂ ପ୍ରସିଦ୍ଧ ସଂପାଦକ ନୀଳମଣି ବିଦ୍ୟାରତ୍ନଙ୍କ ଯତ୍ନରେ ଯେତେବେଳେ ସର୍ବପ୍ରଥମେ ଗଞ୍ଜାମ ସମ୍ମିଳନୀ ଅନୁଷ୍ଠିତ ହେଲା (ଯାହା ଉତ୍କଳ ସମ୍ମିଳନୀର ଜନ୍ମଦାତ୍ରୀ) ସେଥିରେ ଅନ୍ୟାନ୍ୟମାନଙ୍କ ମଧ୍ୟରେ ନନ୍ଦକିଶୋର, ଶଶିଭୂଷଣ ରାୟ ଏବଂ ଗୋପବନ୍ଧୁ ଦାସ (ଛାତ୍ର) ଯୋଗ ଦେଇଥିଲେ । ନନ୍ଦକିଶୋର ବ୍ରହ୍ମପୁର ଠାରେ ଅନୁରୁଦ୍ଧ ହୋଇ ସମ୍ମିଳନୀ ସକାଶେ ଗୋଟିଏ ଗୀତ ରଚନା କଲେ ଏବଂ ତାହା କଟକର ସଙ୍ଗୀତ ବିଶାରଦ ଖାନ୍ ମହମ୍ମଦଙ୍କ ଦ୍ୱାରା ହାରମୋନିୟମ୍ ସଂଯୋଗରେ ଗାନ ହୋଇଥିଲା । ତା'ର ପ୍ରଥମ ପଙ୍‌କ୍ତି ''ଉଠଗୋ ଦୁଖିଃନୀ ଉତ୍କଳ ଜନନୀ ପାହିଛି ବିଷାଦ ଯାମିନୀ ତବ'' । ସେତେବେଳକୁ କଟକ ଟାଉନ୍ ସ୍କୁଲଟି କଟକ ଟାଉନ୍ ଭିକ୍‌ଟୋରିଆ ହାଇସ୍କୁଲରେ ପରିଣତ ହୋଇଗଲାଣି ଏବଂ ସେ ତହିଁର ଦ୍ୱିତୀୟ ଶିକ୍ଷକ । ଏହି ସଂପର୍କରେ ଉତ୍କଳଗୌରବ ମଧୁସୂଦନଙ୍କ ସହିତ ସେ ଘନିଷ୍ଠ ଭାବରେ ପରିଚିତ ହୋଇ ଆଜୀବନ ତାଙ୍କର ସ୍ନେହ ଓ ସହାନୁଭୂତି ଲାଭ କରିଥିଲେ । ସେହି ସମୟରେ ନନ୍ଦକିଶୋର ଜାତୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ଅନେକଗୁଡ଼ିଏ

ଜାତୀୟ ସଂଗୀତ ରଚନା କରିଥିଲେ । ସେଗୁଡ଼ିକ ତାଙ୍କର 'ଜନ୍ମଭୂମି' ଦ୍ୱିତୀୟ ଭାଗରେ ସନ୍ନିବେଶ କରାଯାଇଛି ।

'ଜନ୍ମଭୂମି' ପ୍ରଥମ ଭାଗରେ 'ସପ୍ତମ ଏଡ଼ବାର୍ଡ଼ଙ୍କୁ ଦୁଃଖିନୀ ଉତ୍କଳମାତାର ଗୁହାରି' ଶିରୋନାମାରେ ଲିଖିତ ଲେଖାଗୁଡ଼ିକ ଉତ୍କଳର ଜାତୀୟ ସଂପଦ ରୂପେ ଚିରଦିନ ସ୍ୱର୍ଣ୍ଣାକ୍ଷରରେ ବିରାଜିତ ହୋଇରହିଥିବ । ଗାନ୍ଧିଜୀ ତାଙ୍କର ବିଶ୍ୱବିଶ୍ରୁତ ସତ୍ୟାଗ୍ରହ ମଧ୍ୟରେ ଲବଣ ଆଇନ୍ ଭଙ୍ଗକୁ ପ୍ରଥମ ସ୍ଥାନ ଦେଇଥିଲେ । କବି ତାହାର ୩୦ ବର୍ଷ ପୂର୍ବରୁ ଉକ୍ତ ଲେଖାରେ ଅତି ମର୍ମସ୍ପର୍ଶୀ ଭାଷାରେ ଲବଣ ଆଇନ୍ ଦ୍ୱାରା ଦୁଃଖିନୀ ଉତ୍କଳ ସନ୍ତାନର ସୂଚନା ଦେଇଥିଲେ । ଜଣେ ସରକାରୀ ଚାକିରିଆ ଭାବରେ ଏପରି ଲେଖା ଅତୁଳନୀୟ । ଆଜି ଯୋଜନା କମିଶନଙ୍କ ଯୋଜନାରେ ମରୁଡ଼ି ଓ ଧୋଇର ପ୍ରତିକାର ବିଷୟରେ ଯେଉଁ ବ୍ୟବସ୍ଥା ଅଛି, କବି ଅତି ଦୂରଦୃଷ୍ଟି ସହକାରେ ଏହି ଲେଖାରେ ସେସବୁ ଉଲ୍ଲେଖ କରି ଯାଇଛନ୍ତି । ତାଙ୍କର ଦୂରଦୃଷ୍ଟିର ଜ୍ୱଳନ୍ତ ଦୃଷ୍ଟାନ୍ତ 'ଭାରତର ଭବିଷ୍ୟତ ଭାଷା' ଶୀର୍ଷକ ଲେଖାରେ ମଧ୍ୟ ଦେଇଛନ୍ତି । ଏହା ୧୯୦୦ ମସିହାରେ ଲିଖିତ । (ନନ୍ଦକିଶୋର ଗ୍ରନ୍ଥାବଳୀରେ ସନ୍ନିବେଶିତ ଜୀବନୀରୁ ଗୃହୀତ ।) ଏହା ଉତ୍କଳ ସମ୍ମିଳନୀର ପ୍ରାକ୍ ପ୍ରସ୍ତୁତି ସମୟର ଲେଖା ।

'ଜନ୍ମଭୂମି' ଦ୍ୱିତୀୟ ଭାଗ 'ଉତ୍ସର୍ଗ'ରେ ପ୍ରଣେତା ନିମ୍ନପ୍ରକାରେ ଲେଖିଛନ୍ତି : ''ସ୍ୱଦେଶ-ପ୍ରେମିକ, ଉତ୍କଳର ବିବିଧ ହିତାନୁଷ୍ଠାତା, ଚିର-ଜୀବନ ସ୍ୱଦେଶ ସେବାରେ ନିଯୁକ୍ତ, ଉତ୍କଳ ସମ୍ମିଳନୀ ସଭାର ପ୍ରତିଷ୍ଠାତା ଓ ପ୍ରଧାନ ଅବଲମ୍ବନ, ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ, ସି.ଆଇ.ଇ ମହୋଦୟଙ୍କ ଗୌରବାନ୍ୱିତ ନାମରେ ଲେଖକ ପ୍ରତି ତାଙ୍କର ଅଯାଚିତ ସ୍ନେହ ନିମିତ୍ତ ଯତ୍‌କିଂଚିତ କୃତଜ୍ଞତାର ନିଦର୍ଶନ ସ୍ୱରୂପ ଏହି 'ଜନ୍ମଭୂମି' ପୁସ୍ତିକା ଉତ୍ସୃଷ୍ଟ ହେଲା ।'' ପୁନଶ୍ଚ ପୁସ୍ତିକାଟିର ଭୂମିକାରେ ବ୍ରଜସୁନ୍ଦର ଦାସ ଲେଖିଛନ୍ତି : ''ଏଥିରେ ସନ୍ନିବିଷ୍ଟ ୨୩ ଗୋଟି ପଦ୍ୟ ମଧ୍ୟରୁ ପ୍ରାୟ ସବୁ ଗୁଡ଼ିକ ଗଞ୍ଜାମ ଜାତୀୟ ସମିତି, ଉତ୍କଳ ସାହିତ୍ୟ ସମାଜ, ଉତ୍କଳ ସମ୍ମିଳନୀ ସଭା, କଟକର ସାରସ୍ୱତ ସମିତି, ଗଞ୍ଜାମ ଛାତ୍ର ସମିତି, ସାମନ୍ତରାପୁର ଛାତ୍ର ସମିତି ପ୍ରଭୃତିଙ୍କ ଅନୁରୋଧରେ ଉତ୍କଳର ନାନା ଶୁଭାନୁଷ୍ଠାନ ଉପଲକ୍ଷ୍ୟରେ ରଚିତ ହୋଇ ଏକାଧିକଥର ବ୍ୟବହୃତ ଏବଂ ସ୍ୱତନ୍ତ୍ର ଭାବରେ 'ଉତ୍କଳ ସାହିତ୍ୟ' ଓ 'ମୁକୁର' ପ୍ରଭୃତି ସାମୟିକ ପତ୍ରିକାଦିରେ ପ୍ରକାଶିତ

ହୋଇଥିଲା । ସମ୍ପ୍ରତି ଏକ ପ୍ରକାର ଭାବୋଦ୍ଦୀପକ ଉକ୍ତ ବିକ୍ଷିପ୍ତ ପଦ୍ୟ ଓ ସଙ୍ଗୀତଗୁଡ଼ିକ ଏକତ୍ର ସମାବେଶ ପୂର୍ବକ ପୁସ୍ତକ ଆକାରରେ ପ୍ରକାଶିତ କରି ସ୍ୱଦେଶବାସୀ ମାନଙ୍କ ସମ୍ମୁଖରେ ଉପସ୍ଥାପିତ କଲୁଁ ।''

ପଲ୍ଲୀ କବିତା ରଚନାର ବହୁଳତା ହେତୁ ପଲ୍ଲୀପ୍ରାଣ ନନ୍ଦକିଶୋର ପଲ୍ଲୀକବି ଭାବେ ଆଖ୍ୟାୟିତ ହେଲେ ମଧ୍ୟ ଅପରପକ୍ଷେ ସେ ମଧ୍ୟ ଜଣେ ଜାତୀୟବାଦୀ ସ୍ୱଦେଶବତ୍ସଳ କବି ରୂପେ ଗୃହୀତ । ଉତ୍କଳ ସମ୍ମିଳନୀ ଏବଂ ଏହାର ସତୀର୍ଥ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜ ସହ ତତ୍‌କାଳୀନ ପ୍ରମୁଖ ଲେଖକ ଓ କବି ମାନଙ୍କ ପରି ସେ ଥିଲେ ଘନିଷ୍ଠ ଭାବେ ସମ୍ପୃକ୍ତ । ପଲ୍ଲୀକବିଙ୍କର ଉତ୍କଳପ୍ରାଣତା 'ଉତ୍କଳ ଜନନୀଙ୍କ ଆହ୍ୱାନ' କବିତାରେ ସ୍ପଷ୍ଟ ପରିସ୍ଫୁଟ :

'ଡାକନ୍ତି ଉତ୍କଳ ମାତା କୋଟି ସନ୍ତାନେ ତାଙ୍କର  
କେ ରହିପାରିବ ଦୂରେ ଶୁଣି ଡାକ ମାତାଙ୍କର !  
କହନ୍ତି ଡାକିଣ ମାତା 'ମୋର ପ୍ରାଣ-ସୁତସୁତା  
କିମ୍ପା ହେଲ ଅରକ୍ଷିତ ତେଜି ନିଜପ୍ରିୟ -ଘର !  
ନଦୀ ହ୍ରଦ ଗିରିବନ ମୋ ତନୁରେ ସୁଶୋଭନ  
ନିରନ୍ତର ନିରବଧି ପଖାଳନ୍ତି ମୋ ପୟର ।

x x x x x x x x x

ମିଳିଲେ ସକଳ ଭାଇ ମୋ ଦୁଃଖ ରହିବ ନାହିଁ  
ଭୁଲିଣ ସକଳ ଭେଦ ପୋଛ ମୋ ନୟନ ନୀର ।'

ପୁନଶ୍ଚ 'ଉତ୍କଳ ବନ୍ଦନା'ରେ :

''ଜୟ ମା ଉତ୍କଳ ପୁରାଣ ପବିତ୍ର  
ଜୟ ମା ଉତ୍କଳ ସୁନ୍ଦର ବିଚିତ୍ର,  
ଗଙ୍ଗା ଗୋଦାବରୀ ମହେନ୍ଦ୍ର-ନୀରଧି  
ଚୌଦିଗେ କୀର୍ତ୍ତି ତୋ ଘୋଷେ ନିରବଧି,

କଳ ନାଦିନୀ ତୋ ଶତ ସ୍ରୋତସ୍ୱତୀ
ପଦଧୌତ କରେ ତୋ ନୀଳାମ୍ବୁ ନିତି ।

x x x x x x x x

ଜୟମା ଜୟମା ଉତ୍କଳ ଜନନୀ
ଉଠୁ କୋଟି କଣ୍ଠୁ ଜୟଗୀତି ଧ୍ୱନି,
ପୁରୀ, ବାଲେଶ୍ୱର, କଟକ, ଗଞ୍ଜାମ
କି ସମ୍ବଲପୁର ଗାଉ ମା ତୋ ନାମ,
ସର୍ବ ଝାଡ଼ଖଣ୍ଡ ଗଡ଼ଜାତ ଦରୀ
ପ୍ରତିଧ୍ୱନି କରୁ ନାମ ମା ତୋହରି,
କପିଳାସ ମାଲ୍ୟଗିରି ମେଘାସନ
ଗନ୍ଧମାର୍ଦ୍ଦନରୁ ଉଠୁ ଏ ଗାୟନ ।''

x x x x x x x x

ଦୃଷ୍ଟାନ୍ତ ଦେବାକୁ ବସିଲେ ସରିବ ନାହିଁ ।

'ଉତ୍କଳ ସମ୍ମିଳନୀ' ଓ 'ଉତ୍କଳ ସାହିତ୍ୟ ସମାଜ'କୁ କେନ୍ଦ୍ରକରି ସେତେବେଳର କବିଗୋଷ୍ଠୀ ଗଢ଼ି ଉଠିଥିଲେ । ଫକୀରମୋହନ, ରାଧାନାଥ, ମଧୁରାଓ, ମେହେର.... ସମସ୍ତେ । ଏହି ଧାରା ଚାଲିଆସିଛି ସତ୍ୟବାଦୀ, ପଞ୍ଚସଖା, ଗୋଦାବରୀଶ ମହାପାତ୍ର ଓ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଜାତୀୟ ଉଦ୍‌ବୋଧନୀ ସଙ୍ଗୀତ ଦେଇ ଏପର୍ଯ୍ୟନ୍ତ ।

ଉପର୍ଯ୍ୟୁକ୍ତ ଉକ୍ତିଗୁଡ଼ିକ ପାଠକଲା ପରେ 'ପଲ୍ଲୀକବି' ନନ୍ଦକିଶୋର ଯେ ଏପରି ଦେଶାତ୍ମବୋଧକ ଗାନ ଲେଖିଥିବେ, ବିଶ୍ୱାସ ଆସୁଛି ତ ? □

# ନନ୍ଦକିଶୋର : ଏକ ଶ୍ରଦ୍ଧା ନିବେଦନ

□ ସଂଘମିତ୍ରା ମିଶ୍ର

ନନ୍ଦକିଶୋର ଓଡ଼ିଆ ସାହିତ୍ୟ ଜଗତର ଏକ ଦୀପ୍ତିମନ୍ତ ଜ୍ୟୋତିଷ୍କ, ଯେ କି ସ୍ୱୀୟ ଆଲୋକରେ ଉତ୍କଳ ଓ ପରିବେଶକୁ ଆଲୋକିତ କରିବାରେ ସକ୍ଷମ । ବାଲ୍ୟକାଳରୁ ପଲ୍ଲୀର ଅପରୂପ ସୁଷମାରେ ମୁଗ୍ଧ ଚକିତ କବି ଶିକ୍ଷା ଅର୍ଜନ କାଳରେ ସାହିତ୍ୟ ସାଧକ ଭକ୍ତକବି ମଧୁସୂଦନ, କବିବର ରାଧାନାଥ, ପ୍ରକୃତି କବି ଗଙ୍ଗାଧର ଓ ବାଗ୍ମୀ ବିଶ୍ୱନାଥ ପ୍ରଭୃତିଙ୍କ ସଂସ୍ପର୍ଶରେ ଆସିଥିଲେ । ତେଣୁ ତାଙ୍କର ବ୍ୟାପକ କବି ଦୃଷ୍ଟିକୁ ମିଳିଥିଲା ଅସୀମ ଗାମ୍ଭୀର୍ଯ୍ୟ । ପ୍ରକୃତି ମଧ ଦେଇ ମାନବ ପ୍ରକୃତିକୁ ଚିହ୍ନିବା ଅନ୍ତର୍ଦୃଷ୍ଟି ସେ ଲାଭ କରିଥିଲେ । ପଲ୍ଲୀର ସରଳ ଜୀବନଧାରା ମଧ୍ୟରୁ ସୃଷ୍ଟି ତାଙ୍କର ବିମଳ କବିତ୍ୱ ବିଶ୍ୱତୋମୁଖୀ ହୋଇ ପରମାତ୍ମାଙ୍କୁ ସ୍ପର୍ଶ କରିବାରେ ସମର୍ଥ ହୋଇ ପାରିଥିଲା ।

୧୮୭୫ ମସିହା ଡିସେମ୍ବର ୨୨ ତାରିଖରେ ଜନ୍ମ ଏହି ପ୍ରତିଭାଧର ସ୍ରଷ୍ଟା ଏକାଧାରରେ ଥିଲେ ଔପନ୍ୟାସିକ, ସମାଲୋଚକ, ଶିଶୁ ସାହିତ୍ୟିକ, ନାଟ୍ୟକାର, ଅନୁବାଦକ ତଥା କବି । ତାଙ୍କର ଏକମାତ୍ର ଉପନ୍ୟାସ 'କନକଲତା' ଓଡ଼ିଆ ଜନଜୀବନର କଳାତ୍ମକ ଅଭିବ୍ୟକ୍ତିକୁ ରୂପାୟିତ କରିଛି । 'ଶର୍ମିଷ୍ଠା', 'ସୀତା ବନବାସ' ଓ 'କୃଷ୍ଣକୁମାରୀ' ହେଉଛି ତାଙ୍କ ରଚିତ ଖଣ୍ଡକାବ୍ୟ ତ୍ରୟ । ଏକମାତ୍ର ନାଟକ 'ମୋଗଲ ମହାନୟକ'ର ସେ ନାଟ୍ୟକାର । 'କବି ରାଧାନାଥ ଓ ତଦୀୟ କବିତା', 'ଉତ୍କଳ କବି ଫକୀରମୋହନ', 'ରାୟ ମଧୁସୂଦନ ରାଓ ବାହାଦୂର' ଭଳି ଅନେକ ସମାଲୋଚନାର ସେ ରଚୟିତା । ପାଶ୍ଚାତ୍ୟ କବି ସେକ୍ସପିୟର, ଟେନିସନ୍, କିଟ୍ସ, ଶେଲି ପ୍ରଭୃତିଙ୍କର ପ୍ରସିଦ୍ଧ କବିତାମାନଙ୍କର ସେ ଭାବାନୁବାଦ ମଧ୍ୟ କରିଛନ୍ତି । 'ନାନାବାୟା ଗୀତ', 'ବାୟାଚଢ଼େଇ', 'ବଣିଚଢ଼େଇ', 'ଚୁଟିଆ ମୂଷା' ଭଳି ଶିଶୁକବିତାର ରଚୟିତା ନନ୍ଦକିଶୋରଙ୍କର ଶ୍ରେଷ୍ଠ ପରିଚୟ ହେଉଛି ତାଙ୍କର ରାଶି ରାଶି ପଲ୍ଲୀ କବିତା । ଏଗୁଡ଼ିକର ଭାବ ସରଳ ଓ ଭାଷା ସାବଲୀଳ । ସାଧାରଣ ଭାବରେ ଅସାଧାରଣ କଥା କହିବାର

କ୍ଷମତା ତାଙ୍କର ଥିଲା । ସେଥିପାଇଁତ ଓଡ଼ିଆ ସାହିତ୍ୟର ପାଠକମାନଙ୍କ ନିକଟରେ ନନ୍ଦକିଶୋର ଏକ ଶ୍ରଦ୍ଧା ଓ ଆତ୍ମୀୟତାପୂର୍ଣ୍ଣ ନାମ ।

ନନ୍ଦକିଶୋରଙ୍କ ସାହିତ୍ୟ ସାଧନାର ସମୟଥିଲା ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ଆଦ୍ୟପାଦ । ନବଜାଗରଣର ସ୍ୱର ସାହିତ୍ୟର ପ୍ରତ୍ୟେକ ବିଭାଗରେ ଅନୁରଣିତ ହେଉଥିଲା । ତେଣୁ ଅନୁବାଦ, ଅନୁସରଣ, ଉପନ୍ୟାସ, ଶିଶୁ କବିତା, ଚତୁର୍ଦ୍ଦଶପଦୀ କବିତା, ଶିଶୁ କାବ୍ୟ ପ୍ରଭୃତି ଲେଖିବା କେବଳ ଭାବପ୍ରବଣତା ନଥିଲା, ଥିଲା ସମୟର ଆବଶ୍ୟକତା । ଏହି ଜାତୀୟ ଦାୟିତ୍ୱ ତତ୍କାଳୀନ ସ୍ରଷ୍ଟା ପୁରୁଷମାନେ ଖୁବ୍ ଦକ୍ଷତାର ସହିତ ସମ୍ପାଦନ କରିଥିଲେ । ବ୍ରାହ୍ମସମାଜ, ଆର୍ଯ୍ୟସମାଜ, ରାମକୃଷ୍ଣ ମିଶନ ଭଳି ସଂସ୍କାର ଦୃଷ୍ଟି ସହିତ ନନ୍ଦକିଶୋରଙ୍କ ପ୍ରତ୍ୟକ୍ଷ ଓ ପରୋକ୍ଷ ସମ୍ପର୍କଥିଲା । ତେଣୁ ଆଧୁନିକ ଜୀବନବୋଧ ଓ ଅନ୍ତର୍ଦ୍ଦୃଷ୍ଟି ତାଙ୍କର ରଚନାକୁ ପରିବେଶ ଉପଯୋଗୀ କରିଥିଲା । ଶିକ୍ଷକ ଓ ପରିଦର୍ଶକ ଭାବରେ ଜୀବନ ଅତିବାହିତ କରୁଥିବା କବିଙ୍କ କୃତିରେ ଶିକ୍ଷକସୁଲଭ ଉପଦେଶ, ବଂଧୁସୁଲଭ ଅନ୍ତରଙ୍ଗତା ଓ ଅଭିଭାବକସୁଲଭ ସଚେତନତା ସମନ୍ୱିତ ହୋଇଯାଇଥିଲା । ସତ୍ୟ ଶିବ ସୁନ୍ଦରର ଉପାସକ କବି ବ୍ୟକ୍ତିର ଦୁଃଖ, ସୁଖ, ବିଷାଦବୋଧ ଓ ଭାବପ୍ରବଣତାରୁ ଉର୍ଦ୍ଧ୍ୱକୁ ଉଠି ସମଷ୍ଟି ପାଇଁ ନିବେଦିତ ହୋଇଯାଇଛନ୍ତି । ଜାତିପ୍ରୀତି ଓ ବିଶ୍ୱପ୍ରାଣତା ତାଙ୍କର ସୃଷ୍ଟିକୁ ସାର୍ବଜନୀନ କରିପାରିଛି । ଜାତିର ଉନ୍ନତି ଓ ସାହିତ୍ୟର ଉନ୍ନତି ଯେ ଜୀବନର ଉନ୍ନତି ଏକଥା ତାଙ୍କର 'ଜନ୍ମଭୂମି' କବିତାରେ ପ୍ରତିଫଳିତ ।

''ଜାତୀୟ ସାହିତ୍ୟ ଉନ୍ନତ ନୋହିଲେ
ଜାତୀୟ ଉନ୍ନତି ନହୁଏ କେବେ
ସାହିତ୍ୟ ଜାତୀୟ ଜୀବନ-ଆଦର୍ଶ
ଉଠିଲେ ସେ ଜାତି ଉଠଇ ତେବେ ।''

ଅତୀତ ପ୍ରୀତି ତାଙ୍କ ସାହିତ୍ୟ ସାଧନାର ଅନ୍ୟ ଏକ ଦିଗ । ସୌନ୍ଦର୍ଯ୍ୟ ସହିତ ବିଷାଦର ସମ୍ମିଶ୍ରିତ ଭାବନା 'ଅତୀତ ଚିନ୍ତା' କବିତାରେ ଲକ୍ଷକରିହେବ ।

'' କି ଅପୂର୍ବ ପ୍ରହେଳିକା ମାନବ ଜୀବନ
କି ଗଭୀର ରହସ୍ୟ ଏ ମନୁଷ୍ୟର ମନ ।

ବସିଅଛି ଏବେ ମୁହିଁ ନିଶ୍ଚଳେ ନିର୍ଜନେ
କେତେ ଭାବୋଚ୍ଛ୍ୱାସ ଆହା ଉଠଇ ମୋ ମନେ !''

ତାଙ୍କର ପ୍ରେମ ଭାବନା ମଧ୍ୟ ବିକାର ବର୍ଜିତ, ଶୁଦ୍ଧ ପବିତ୍ର । ନିର୍ମଳ ପ୍ରେମ ସମ୍ପର୍କରେ ତାଙ୍କ କବିତାରେ ସେ ବାରମ୍ବାର ଗୁରୁତ୍ୱ ପ୍ରଦାନ କରିଛନ୍ତି । ଶୁଦ୍ଧ ପ୍ରେମ ମନୁଷ୍ୟକୁ ଉର୍ଦ୍ଧ୍ୱଗତି ପ୍ରଦାନ କରେ । ସେହି ଅନନ୍ୟ ପ୍ରେମରେ ଆତ୍ମାର ବନ୍ଧନ ଚିରସ୍ଥାୟୀ ହୁଏ ଓ ସଂସାର ମଧୁମୟ ହୋଇଯାଏ । ଏହି ପର୍ଯ୍ୟାୟରେ ନନ୍ଦକିଶୋର ଭକ୍ତକବି ମଧୁସୂଦନଙ୍କ ସମଧର୍ମୀ । ନାରୀ ପ୍ରତି ସମ୍ମାନବୋଧ ମଧ୍ୟ ତାଙ୍କ କବିତାର ଅନ୍ୟ ଏକ ବିଶିଷ୍ଟତା । ସତୀତ୍ୱ, ଦେବୀତ୍ୱ ଚିରଦିନ ନାରୀର ଲଲାଟ ଲିଖନ ବୋଲି ଭକ୍ତକବି ତତ୍କାଳୀନ ସମାଜରେ ଉଦାତ୍ତ ସ୍ୱରରେ ଘୋଷଣା କରିଥିଲେ । ପଲ୍ଲୀକବି ମଧ୍ୟ ପତିତା ନାରୀକୁ ସହାନୁଭୂତି ଓ ମର୍ଯ୍ୟାଦା ପ୍ରଦାନ କରିଛନ୍ତି :

'ଯେତେ ହୋ ପତିତା ନାରୀ ତୁ ମାନବ ମିତ୍ର
ପ୍ରବଂଚକ ନରଠାରୁ ଶ୍ରେଷ୍ଠ ତୋ ଚରିତ୍ର ।'

('ବିଦେଶିନୀ'- ତରଂଗିଣୀ)

ଏଇଭଳି ଏକାଧିକ ପଦରୁ ତାଙ୍କର ବିଚାର ମଧ୍ୟ ଭକ୍ତକବିଙ୍କ ଅନୁରୂପ ବୋଲି ଦେଖିବାକୁ ମିଳେ ।

'ବାଲ୍ୟକାଳୁ ଧର୍ମଧନ ମୁଁ ସଂଚିବି
ଏ ଜୀବନ ଅନିଶ୍ଚିତ
କେଜାଣେ କାହାର ଆଜି ମୃତ୍ୟୁକାଳ
ହୋଇଯିବ ଉପସ୍ଥିତ ।'

ମଧୁସୂଦନ ଯେଉଁ ଭଳି ଶିଶୁଙ୍କ ନିମିତ୍ତ ରଚିତ କବିତାରେ ଉକ୍ତ ଉଚ୍ଚାରଣ କରିଥିଲେ, ସେହିଭଳି 'ପ୍ରଭାତ ସଂଗୀତ' କବିତାରେ ନନ୍ଦକିଶୋର ସ୍ପଷ୍ଟଭାବରେ କହନ୍ତି :

''ଚାଲ ପ୍ରିୟ ବନ୍ଧୁ ସେ ପ୍ରଭୁଙ୍କୁ ନମି
କରିବା ଯେ ଯାହା କର୍ତ୍ତବ୍ୟକର୍ମ

ପ୍ରତି ପ୍ରଭାତରେ ପ୍ରଭୁଙ୍କୁ ସୁମରି

ଶୈଶବ କାଳରୁ ସଂଚିବା ଧର୍ମ ।"

ତାଙ୍କର ଈଶ୍ୱର କୌଣସି ଧର୍ମୀୟ ନିଗଡ଼ରେ ବନ୍ଦୀ ନୁହନ୍ତି । ସେ ଜୀବନ ଦେବତା, ବିଶ୍ୱପତି । ବୁଦ୍ଧି, ଇଚ୍ଛା, ଭାବ, ବୃତ୍ତି ଓ ଆଦର୍ଶ ରୂପରେ ଈଶ୍ୱର ପ୍ରତ୍ୟେକ ମାନବର ଅନ୍ତରରେ ବିରାଜିତ । ସେ ଜ୍ଞାନ, କର୍ମ ଓ ଭକ୍ତିର ଆକର । ପ୍ରକୃତିର ପ୍ରତ୍ୟେକ ଅଂଶରେ ତାଙ୍କର ବିଭୂତି ପରିବ୍ୟାପ୍ତ । ତେଣୁ ତାଙ୍କର ରଚନା ସମୂହରେ ଧର୍ମୀୟ ସଂକୀର୍ଣ୍ଣତା ନାହିଁ, ବରଂ ଅଛି ବିଶ୍ୱମାନବ ପାଇଁ ଉଦାର ଭ୍ରାତୃଭାବ ।

'ହରି ହରି କୃଷ୍ଣ ଡାକୁଅଛି କେହି

ବ୍ରହ୍ମା ବିଷ୍ଣୁ ଶିବ ରାମ

କେହି ଡାକେ ଖୋଦା କେହି ଡାକେ ଗଡ୍

ସେହି ଜଣକର ନାମ ।'

(ସଂଧ୍ୟା ସଂଗୀତ)

ସୁଦୂରର ମୋହ ରୋମାଣ୍ଟିକ ଭାବପ୍ରବଣତାର ଏକ ବିଭାବ । ସବୁ ହାତଅପହଂଚ ଦ୍ରବ୍ୟ ଚିରଦିନ ଆକର୍ଷଣୀୟ । ସେହିଭଳି ଏକ ପ୍ରଚ୍ଛନ୍ନ ବିଷାଦବୋଧ କବିତା 'ଅଦିନ ମେଘ'ର ଅଂଶ ବିଶେଷ । ଅଦିନମେଘ ଦର୍ଶନରେ କବିଚିତ୍ତ ପୁଲକିତ ସତ୍ୟ; କିନ୍ତୁ ପ୍ରାଣବନ୍ଧୁଙ୍କର ଅଦର୍ଶନରେ ସେ ବିଷାଦିତ । ଅଦିନ ମେଘକୁ ଦେଖି ତାଙ୍କର ଉପଲବ୍ଧି ଏଇଭଳି :

'କି ଅବା ଦୂରସ୍ଥ ପ୍ରାଣ ବନ୍ଧୁ କେହି

ମନେକରେ କଥାମୋର

ଗୁପତେ ମୋ ଆତ୍ମା ବିଦଗ୍ଧ କରୁଛି

ସେ ସ୍ମୃତି ଗୁପତ ଚୋର ।

ଚିନ୍ତାର୍ଣ୍ଣବେ ବୁଡ଼େ ମନମୀନ ମୋର

ତୋତେ ଦେଖି ନବଘନ

କାହିଁ ବସି କିଏ ଗାଇଲା ସଂଗୀତ

ଭାବରେ ବିଭୋର ମନ ।''

(ଅଦିନ ମେଘ)

ନବଘନକୁ ଦେଖି ବିଷାଦମୟ ରାଗିଣୀ ଶୁଣୁଥିବା କବି ନନ୍ଦକିଶୋର ଜୀବନର ଅନନ୍ୟତା ସମ୍ପର୍କରେ ଯଥେଷ୍ଟ ସଚେତନ । ତାଙ୍କର 'ନଦୀ ପ୍ରତି' ଭଳି ଚତୁର୍ଦ୍ଦଶପଦୀ କବିତା ଗୁଡ଼ିକ ଏକାନ୍ତ ଭାବମୟ ।

ପଲ୍ଲୀ ଗୀତଗୁଡ଼ିକର ସ୍ରଷ୍ଟା ଚିରଦିନ ଦୃଷ୍ଟିର ଆଢ଼ୁଆଳରେ ରହିଯାଆନ୍ତି । ଚିରନ୍ତନତାର ମୂଲ୍ୟ ନେଇ ପଲ୍ଲୀ କବିତା ଗୁଡ଼ିକ ଯୁଗପରେ ଯୁଗ ମୁହଁରୁ ମୁହଁକୁ ଗଡ଼ିଚାଲେ । କିନ୍ତୁ ନନ୍ଦକିଶୋର ଆଧୁନିକ ଯୁଗର ସ୍ରଷ୍ଟା । ନିଜ କୃତି ସମ୍ପର୍କରେ ଯଥେଷ୍ଟ ସଚେତନ । ତାଙ୍କର ସରଳ ଭାଷା-ବିନ୍ୟାସ, ଗ୍ରାମ୍ୟଜୀବନର ନିଛକ ଚିତ୍ର, ଅତୀତପ୍ରୀତି ପ୍ରଭୃତି ତାଙ୍କୁ ଏକ ଅନନ୍ୟ ମର୍ଯ୍ୟାଦା ପ୍ରଦାନ କରିଛି । ସେ ସଚେତନ ଭାବରେ କାମନା କରିଛନ୍ତି :

'ଅଗରୁ ଧୂପର ପରାଏ ନିରନ୍ତର ମୁଁ ଜଳି

ବିତରିବି ବାସ ଜଗତ ଜନେ ସ୍ୱାର୍ଥକୁ ଦଳି ।

ଅତିକ୍ରମି ମୁଁ ଏ ଉଦର ଲଭି ଶାଶ୍ୱତ ଧନ

ଲୌହ ପ୍ରାଣ ଦେଇ ପାରିବି ମୁହିଁ ହୈମ ଜୀବନ ।'

ମାତ୍ର ୫୨ ବର୍ଷ ବୟସରେ ଏହି ସ୍ରଷ୍ଟା 'ହୈମ ଜୀବନ'ର ଆଶାରେ ଶରୀର ତ୍ୟାଗ କରିଛନ୍ତି । ହୁଏତ ତାଙ୍କର ଦୀର୍ଘ ଜୀବନ ଓଡ଼ିଆ ସାହିତ୍ୟର ଅନ୍ୟ କୌଣସି ନୂତନ ପ୍ରସ୍ଥ ଉନ୍ମୋଚନ କରିପାରିଥାନ୍ତା । କିନ୍ତୁ ଶିଶୁମାନେ ''ମେଘ ବରଷିଲା ଟପର ଟପର, କେଶୁର ମାଇଲା ଗଜା'' ଗାଉଥିବା ପର୍ଯ୍ୟନ୍ତ କେହି ଇଚ୍ଛା କରି ନନ୍ଦକିଶୋରଙ୍କୁ ବିସ୍ମୃତ ହୋଇପାରିବ ନାହିଁ । ସେ ନିଜ କୃତିତ୍ୱ ବଳରେ ଚିର ଭାସ୍ୱର ରହିଥିବେ । □

# ନବଯୁଗର ଚାରଣ : ନନ୍ଦକିଶୋର

## ◻ ଦେବେନ୍ଦ୍ର କୁମାର ଦାଶ

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ପୂର୍ବ-ଓଡ଼ିଶା ଅଧିକାର କଲାପରେ ଅଧିକୃତ ଅଞ୍ଚଳରେ କେତେକ ସାମାଜିକ ଓ ସାଂସ୍କୃତିକ ପରିବର୍ତ୍ତନ ଦେଖାଦେଇଥିଲା । ଏହି ପରିବର୍ତ୍ତନ ଆମର ସାହିତ୍ୟକ ଓ ଐତିହାସିକମାନଙ୍କ ଦ୍ୱାରା ପୁନ୍‌ରୁତ୍‌ଥାନ, କାଳାନ୍ତର ବା ନବଯୁଗ ଭାବରେ ଅଭିହିତ । ପ୍ରଥମେ ବଙ୍ଗଦେଶରେ ଏହି ନବଯୁଗ ଆଣିଥିବା ରୂପାନ୍ତରକୁ ସମକାଳୀନ ସ୍ୱଦେଶୀ ଚିନ୍ତାନାୟକମାନେ ପଞ୍ଚଦଶ ଶତକର ଇଟାଲୀରେ ଘଟିଥିବା ରେନେସାଁ ସହ ଉପମିତ କରିଥିଲେ । ଏହି ତଥାକଥିତ ନବଜାଗରଣର ଦୀପ୍ତି ଓଡ଼ିଶାରେ ଥିଲା ଅତ୍ୟନ୍ତ ମଳିନ; ଏହି ନବଜାଗରଣ ଫଳରେ ଘଟୁଥିବା ପରିବର୍ତ୍ତନର ଗତି ଓଡ଼ିଶାରେ ଥିଲା ଅତ୍ୟନ୍ତ ମନ୍ଥର । ସମାଜର ଅଳ୍ପ କେତେଜଣ ବୁଦ୍ଧିମାନ ଲୋକ ଏଭଳି ନବଯୁଗରୁ ଲାଭବାନ ହୋଇଥିଲେ, ଓଡ଼ିଶାରେ ଅଧିକାଂଶ ଜନସାଧାରଣଙ୍କ ଜୀବନରେ ଏହା କୌଣସି ଗୁଣାତ୍ମକ ଭୂମିକା ନେଇନଥିଲା । କଟକ, ପୁରୀ, ବାଲେଶ୍ୱର ଆଦି ଜିଲ୍ଲା ପ୍ରଶାସନିକ କେନ୍ଦ୍ରଗୁଡ଼ିକରେ ଅବସ୍ଥାନ କରୁଥିବା ମୁଷ୍ଟିମେୟ ଅମଲା, ଶିକ୍ଷକ, ଓକିଲ ଓ ସେମାନଙ୍କର ସାହାଯ୍ୟକାରୀ ବ୍ୟବସାୟୀ ତଥା ନୂତନ ଶିକ୍ଷାରେ ଶିକ୍ଷିତ ଗୋଷ୍ଠୀ ଔପନିବେଶିକ ଶାସନର ସ୍ୱାର୍ଥ ଓ ପ୍ରତିକ୍ରିୟା ଫଳରେ ପାରମ୍ପରିକ ମୂଲ୍ୟବୋଧ ଓ ବିଶ୍ୱଦୃଷ୍ଟିକୁ କେତେକାଂଶରେ ଅସ୍ୱୀକାର କରିଥିଲେ । ଶିକ୍ଷକ, ସାମ୍ବାଦିକ, ରାଜନୈତିକ-କର୍ମୀ ଭାବରେ ସେମାନେ ନୂଆ ଜୀବନବୋଧକୁ ଆପଣାର ନକଲେ ବି ରଚନା ଓ ବୁଦ୍ଧିମାର୍ଗୀୟ ଚିନ୍ତାରେ ନୂଆ ନୂଆ ଦୃଷ୍ଟିକୋଣର ସୂଚନା ଦେଇଥିଲେ । ଅଶିକ୍ଷା, ଦାରିଦ୍ର୍ୟ ଓ ଅସ୍ମିତା-ବିଲୁପ୍ତିକୁ ସତ୍ୟ ବୋଲି ଆଦରି ନେଇଥିବା ଓଡ଼ିଆମାନେ ଏଭଳି ଦୃଷ୍ଟିକୋଣର ପରିଚର୍ଚ୍ଚା ଫଳରେ ଏସବୁ ସମ୍ପର୍କରେ ସଚେତନ ହୋଇ ଉଠିଥିଲେ । ଏହି ଅଶିକ୍ଷା ଆଦିର କାରଣ, ପ୍ରକାର ଓ ନିରାକରଣ ବିଷୟରେ ଚିନ୍ତା କରିଥିଲେ । ସେତେବେଳର ଏଭଳି ଅଳ୍ପ କେତେଜଣ ସଚେତନ ଓଡ଼ିଆଙ୍କ ମଧ୍ୟରୁ ପଲ୍ଲୀକବି ଭାବରେ ପରିଚିତ ନନ୍ଦକିଶୋର ବଳ ଅନ୍ୟତମ ।

ନନ୍ଦକିଶୋରଙ୍କ ସମକାଳୀନ ବୁଦ୍ଧିଜୀବୀମାନଙ୍କର ଗୋଟାଏ ବଡ଼ ବୈଶିଷ୍ଟ୍ୟ ହେଲା: ସେମାନେ ପୂର୍ବକଥିତ ରୂପାନ୍ତର / କାଳାନ୍ତରର ଚାରିତ୍ରିକ ବୈଶିଷ୍ଟ୍ୟ ନେଇ ଥିଲେ ଅତ୍ୟଧିକ ସଚେତନ ଓ ସତର୍କ । ଏହି ସତର୍କ ଦୃଷ୍ଟି ଫଳରେ ସେମାନେ ନିଜର ଅସ୍ମିତା ଓ ଅବ୍ୟବହିତ ପରିବେଶ ପ୍ରତି ଆପଣାର କର୍ତ୍ତବ୍ୟବୋଧ ସମ୍ବନ୍ଧରେ ହୋଇ ଉଠିଥିଲେ ସ୍ପର୍ଶକାତର । ଏହି ସ୍ପର୍ଶକାତରତାରୁ ଓଡ଼ିଆ-ଜାତୀୟତାର ସୃଷ୍ଟି । ଭାରତର ସମକାଳୀନ ପ୍ରାୟ ସମସ୍ତ ବୁଦ୍ଧିଜୀବୀ ଇଂରେଜ ଅଧିକାର ଓ ଔପନିବେଶିକ ଶାସନକୁ କେବଳ ସତ୍ୟ ବୋଲି ଗ୍ରହଣ କରିନେଇ ନଥିଲେ; ସେମାନଙ୍କ ଦୃଷ୍ଟିରେ ଏହା ଥିଲା ବିଧାତାଙ୍କର ଆଶୀର୍ବାଦ-ବିଶେଷ । ଓଡ଼ିଶାର ସମକାଳୀନ କବି ଓ ସାହିତ୍ୟିକମାନଙ୍କ ମଧ୍ୟରୁ, ମୋର ମନେହୁଏ, ନନ୍ଦକିଶୋର ବଳ ହିଁ ଏହି ନବ ଯୁଗର ବୈଶିଷ୍ଟ୍ୟ ଓ ଚରିତ୍ରକୁ ସବୁଠାରୁ ଅଧିକ ଘନିଷ୍ଠ ଭାବରେ ଉପଲବ୍ଧି ଓ ଗ୍ରହଣ କରିପାରିଥିଲେ । ତାଙ୍କର ପ୍ରବନ୍ଧ, ଉପନ୍ୟାସ ଓ କବିତା ଗୁଡ଼ିକରେ ଏହି କାଳାନ୍ତରର ଜୟଗାନ ସବୁଠାରୁ ସୋଚ୍ଚାର ଓ ତାଙ୍କର ସଂପୃକ୍ତି ସବୁଠାରୁ ଅଧିକ ଅନ୍ତରଙ୍ଗ ।

ଇଂରେଜ ଅଧିକାର ଫଳରେ ଭାରତର ବିଭିନ୍ନ ଅଞ୍ଚଳରେ, ବିଶେଷତଃ ବଙ୍ଗଳାରେ, ଯେଉଁ ଗତିରେ ସାଂସ୍କୃତିକ ଅଗ୍ରଗତି ସାଧିତ ହୋଇଥିଲା, ଓଡ଼ିଶାରେ ତାହା ସମ୍ଭବ ହୋଇପାରି ନଥିଲା । ନନ୍ଦକିଶୋରଙ୍କ ପରିବର୍ତ୍ତନ ଆକାଙ୍କ୍ଷୀ ମନ ଓଡ଼ିଆମାନଙ୍କର ଏଭଳି କୁଣ୍ଠିତ ପଦକ୍ଷେପ ବିରୋଧରେ ବିଦ୍ରୋହ କରିଛି, ପୁଣି କେତେବେଳେ ଏଥିନେଇ ଅବସାଦରେ ଅଭିମାନୀ ହୋଇଉଠିଛି । ଉଭୟ ବିଦ୍ରୋହ ଓ ଅଭିମାନ, ତେଣୁ, ତାଙ୍କର ବହୁ କବିତାରେ ପରିକୀର୍ଣ୍ଣ । ତାଙ୍କ ମତରେ ଏହି ନବଯୁଗ ଆସିଛି ବୀରବେଶରେ । ହାତରେ ତା'ର ବିଜୟ ପତାକା । ସର୍ବମାନବର ଉନ୍ନତି ତାହାର ଉଦ୍ଦେଶ୍ୟ । ଗୋଟାଏ କାଳରାତ୍ରି ପରେ ନବପ୍ରଭାତର ଅରୁଣାଲୋକ ଯେଭଳି ନୂତନ ଜୀବନର ସଂଦେଶ ନେଇ ଆସିଥାଏ, ଏହି ନବଯୁଗ ସେଭଳି ଜ୍ଞାନ ଓ ପ୍ରାଚୁର୍ଯ୍ୟର ଆଲୋକ ସାଥିରେ ନେଇ ଆସିଛି । ନବଯୁଗର ଅରୁଣାଲୋକ ନନ୍ଦକିଶୋରଙ୍କ ମନରେ ଆଣିଥିବା ପୁଳକ ତାଙ୍କର ବିଭିନ୍ନ କବିତା, ବିଶେଷତଃ 'ନବ ଶତାବ୍ଦୀର ନିମନ୍ତ୍ରଣ', 'ନବଯୁଗ' (ନିର୍ମାଲ୍ୟ), 'ନବଯୁଗ' (ପ୍ରଭାତ ସଂଗୀତ) ଆଦିରେ ଅଭିବ୍ୟକ୍ତ । ଇଂରେଜ ଶାସନ କେବଳ ସାଧାରଣ ରାଜନୈତିକ ପରିବର୍ତ୍ତନ ବିଶେଷ ନୁହେଁ--ଏହି ପରିବର୍ତ୍ତନର ଚାପରେ ଆମର ସଂସ୍କୃତି ମଧ୍ୟ

ନୂତନ ଭାବରେ ଆବିଷ୍କୃତ ହୋଇଛି, ଆମର ଐତିହ୍ୟକୁ ଆମେ ଯଥାର୍ଥ ଭାବରେ ଉପଲବ୍ଧି କରିପାରିଛୁ :

ତାମସୀ ଯାମିନୀ ଏବେ ଯାଇଅଛି ପାହି
ପ୍ରାଚୀନ ବୈଷମ୍ୟ ଦ୍ୱେଷ ଦେଖ ଆଉ ନାହିଁ ।
x x x x x x x x x
ପାଇଣ ପଶ୍ଚିମ ଦେଶୁଁ ନବ ନିମନ୍ତ୍ରଣ
ଭାରତ ଉନ୍ନତି-ପଥେ କରୁଛି ଗମନ ।
ପୂରୁବ କାହାଣୀ ଏବେ ପଡ଼ିଅଛି ମନେ
ଭ୍ରାତା ହସ୍ତଧରି ଭ୍ରାତା ଉଦ୍ୟତେ ଗମନେ ।

(ନନ୍ଦକିଶୋର ଗ୍ରନ୍ଥାବଳୀ: ପୃ-୫୦୩)

'ଏକ ଆର୍ଯ୍ୟବଂଶୁ ସମୁଦ୍ଭବ' ଅଥଚ 'ବିଜ୍ଞାନୋଜ୍ଜ୍ୱଳ' ଓ 'ଯୌବନ-ଉଦ୍ଦୀପ୍ତ' ଇଂରେଜମାନଙ୍କ ସମ୍ପର୍କରେ ଆସି ବୃଦ୍ଧ 'ଭାରତବର୍ଷ' ନବଜୀବନରେ ଯେଉଁଭଳି ଉଲ୍ଲସିତ; ସେହିପରି ଓଡ଼ିଶା ମଧ୍ୟ ତା'ର ପୂର୍ବ-ପରିଚୟ ଅନେକାଂଶରେ ଏହି ଇଂରେଜ ସମ୍ପର୍କ ଫଳରେ ହିଁ ପାଇପାରିଛି । ଅପଶାସନର ଅତ୍ୟାଚାର ହେତୁ ଓଡ଼ିଆମାନଙ୍କର ସ୍ମୃତି-ଭ୍ରମ ଘଟିଥିଲା; ସେମାନେ ଯେ ଏକ ଜାତି ଏ ଧାରଣା ସେମାନଙ୍କର ଲୋପ ପାଇଥିଲା । ନବଯୁଗ ଆଲୋକର ସ୍ପର୍ଶରେ ଓ ଇଂରେଜ ସୁଶାସନର ଚିକିତ୍ସା ଫଳରେ ଓଡ଼ିଆମାନେ କ୍ରମଶଃ ଏଭଳି ଏକ ଅସାର ଅବସ୍ଥା ଓ ଅପସ୍ମାର ବ୍ୟାଧିରୁ ମୁକ୍ତିଲାଭ କରୁଛନ୍ତି । ମାତ୍ର ବିଳମ୍ବରେ ଓଡ଼ିଶା ଇଂରେଜ ସୁଶାସନ ସହ ସମ୍ବନ୍ଧାନ୍ୱିତ ହୋଇଥିବାରୁ ଓଡ଼ିଆମାନଙ୍କର ସ୍ମୃତିଶକ୍ତିର ଜାଗରଣ ଅତି ବିଳମ୍ବିତ ଓ ଏକ ଜାତି ହିସାବରେ ସେମାନଙ୍କର ଅଗ୍ରଗମନ ଅତି ମନ୍ଥର । ଓଡ଼ିଆ ଜାତିର ଏହି ଅବସ୍ଥା ବହୁ ଓଡ଼ିଆ କବି, ଜନନାୟକଙ୍କୁ ଅସ୍ଥିର କରିଛି; କିନ୍ତୁ ନନ୍ଦକିଶୋର ଯେଉଁଭଳି ଏହି ଅପସ୍ମାର ବ୍ୟାଧିର ନିଦାନ କରିଛନ୍ତି ଓ ତା'ର ନିରାକରଣ ଉପାୟ ମଧ୍ୟ ସନ୍ଧାନ କରିଛନ୍ତି, ଅନ୍ୟମାନେ ତାହା କରି ପାରିନାହାନ୍ତି । ଓଡ଼ିଶାର ପଲ୍ଲୀଜୀବନ ସହିତ ତାଙ୍କର ଗଭୀର ସଂପୃକ୍ତି ଏହାର କାରଣ । ଗୋଟିଏ ଦିଗରେ 'ନବ ଶତାବ୍ଦୀର ନବ ନିମନ୍ତ୍ରଣ'କୁ ଓଡ଼ିଆମାନେ ପ୍ରତ୍ୟାଖ୍ୟାନ ନ କରିବା ପାଇଁ ସେ

ଯେଉଁଭଳି ଆହ୍ୱାନ କରିଛନ୍ତି, ଅନୁରୂପ ଭାବରେ ଓଡ଼ିଆମାନଙ୍କର ପଶ୍ଚାତବର୍ତ୍ତୀ ଅବସ୍ଥାର କାରଣ ସେ 'ଜନ୍ମଭୂମି' ପ୍ରଥମ ଭାଗରେ 'ଉତ୍କଳମାତା' ମାଧ୍ୟମରେ ଉପସ୍ଥାପିତ କରିଛନ୍ତି । ଜାତୀୟ ଚେତନାର ବିକାଶ ସହ ଦେଶର ଉନ୍ନତି ଯେ ସମାନ୍ତରାଳ, ଏହା ସେ ପ୍ରକାଶ କରିଛନ୍ତି :

ଜାତୀୟତା-ନାଶ ଅବନତି-ମାର୍ଗ
ଜାତୀୟ ମମତା ଉନ୍ନତି-ହେତୁ,
ପ୍ରାଚୀନ ଗୌରବ ଜ୍ଞାନ, ଧର୍ମ, ଶିଳ୍ପ
ଫେରାଇ ଉଡ଼ାଅ ବିଜୟ କେତୁ ।

( ନନ୍ଦକିଶୋରର ଗ୍ରନ୍ଥାବଳୀ : ପୃ-୩୧ )

ଓଡ଼ିଶାରେ ଜ୍ଞାନ, ଧର୍ମ ଓ ଶିଳ୍ପର ବିଜୟ ପତାକା ଉଡ଼ାଇବା ପାଇଁ ନନ୍ଦକିଶୋର ବ୍ରିଟିଶ ସମ୍ରାଟଙ୍କ ନିକଟରେ ସାତଟି ଗୁହାରି କରିଛନ୍ତି । ସେଗୁଡ଼ିକ ହେଲା : ବିଭିନ୍ନ ପ୍ରେସିଡେନ୍ସିରେ ଅନ୍ତର୍ଭୁକ୍ତ ଓ ପରସ୍ପର ବିଚ୍ଛିନ୍ନ ଓଡ଼ିଆ ଭାଷାଭାଷୀ ଅଂଚଳ ଗୁଡ଼ିକର ଏକୀକରଣ, ବଂଗଳା ଭଳି ଓଡ଼ିଶାରେ ଚିରସ୍ଥାୟୀ ବନ୍ଦୋବସ୍ତର ପ୍ରଚଳନ, କୃଷି ପାଇଁ ଜଳଭଣ୍ଡାର ସ୍ଥାପନ, ଲବଣ କର ବିଲୋପ, 'ଓଡ଼ିଆଙ୍କ ପାଇଁ ଓଡ଼ିଶା ପ୍ରଦେଶ' ନୀତିର ପ୍ରତିଷ୍ଠା, ଜାତୀୟ ସାହିତ୍ୟ ଅର୍ଥାତ ଓଡ଼ିଆ ସାହିତ୍ୟର ପୃଷ୍ଠପୋଷକତା ଓ କୃଷି ବ୍ୟାଙ୍କ୍‌ର ପ୍ରତିଷ୍ଠା । ଚାରଣ ସମ୍ରାଟଙ୍କ ଜୟଗାନ କଲାପରି, ନିଜର ଆନୁଗତ୍ୟକୁ ଦ୍ୱିଧାହୀନ ଭାଷାରେ ପ୍ରକାଶ କଲାଭଳି, ନନ୍ଦକିଶୋର ନିଜର ଓ ନିଜ ଜାତିର ଇଂରେଜ ଆନୁଗତ୍ୟକୁ ସ୍ପଷ୍ଟ ଭାଷାରେ ପ୍ରକାଶ କରିଛନ୍ତି :

ଚିରକାଳ ମୁହିଁ ଅଟେ ରାଜଭକ୍ତ
    ରାଜ-ଅନୁଗ୍ରହ ମୋହର ବଳ
ଶୁଣିଲେ ଶୁଣନ୍ତୁ ନ ଶୁଣିଲେ ନାହିଁ
    ମୋର ଏ ଗୁହାରି, ଥାନ୍ତୁ କୁଶଳ ।
ନୃପ ନରରୂପୀ ମହତୀ ଦେବତା
    ସ୍ମୃତିକାର ମନୁ ଅଛନ୍ତି ଭାଷି,

ତେଣୁ ଦୁଃଖ ସୁଖେ ରାଜ-ଅନୁରକ୍ତ

ଚିର ରାଜଭକ୍ତ ଭାରତବାସୀ ।

(ନନ୍ଦକିଶୋର ଗ୍ରନ୍ଥାବଳୀ : ପୃ-୩୨୩)

ଔପନିବେଶିକ ଶାସନର ଅପଘାତରେ, ତାହା ସହ ସହଯୋଗ ଓ ପ୍ରତିଦ୍ୱନ୍ଦ୍ୱିତା କରି ଊନବିଂଶ ଶତକର ଭାରତବର୍ଷରେ ଜନ୍ମମାଟି ପ୍ରତି ମଣିଷର ଥିବା ସ୍ୱାଭାବିକ ମମତାବୋଧ ଓ ଗୋଷ୍ଠୀଚେତନା ବିଭିନ୍ନ ଧରଣର ଜାତୀୟ ଚେତନାରେ ରୂପାନ୍ତରିତ ହୋଇଥିଲା । ଜାତୀୟତାବାଦ ଗୋଟିଏ ଗୋଷ୍ଠୀର ଭାବମୟ-କଳ୍ପନା ଉପରେ ଆଧାରିତ । ଊନବିଂଶ ଶତାବ୍ଦୀର କଳ୍ପିତ ହୋଇଥିବା ଓଡ଼ିଆ ଜାତୀୟତା ନିଜକୁ ବାସ୍ତବ ରୂପେ ପରିଚିତ କରିବା ପାଇଁ ଐତିହ୍ୟ-ଆବିଷ୍କାରରେ ନିୟୋଜିତ ହୋଇଥିଲା । ଐତିହ୍ୟର ଆବିଷ୍କାର ଉଦ୍ଭାବନ ଚେଷ୍ଟା ସହ ବୀରପୂଜା ଘନିଷ୍ଠ ଭାବେ ଜଡ଼ିତ । ତେଣୁ ଐତିହ୍ୟର ଅଂଶବିଶେଷ ଓ ସ୍ରଷ୍ଟା ଭାବରେ ପ୍ରାଚୀନ କବି, ସନ୍ଥ, ପଣ୍ଡିତ ଓ ଯୋଦ୍ଧାମାନେ ପୂଜା ପାଇଥାନ୍ତି । ନନ୍ଦକିଶୋର ଓଡ଼ିଆ ଜାତୀୟତାର ପ୍ରତୀକ ହିସାବରେ ଶ୍ରୀଧର ସ୍ୱାମୀ, ସାରଳା ଦାସ ଓ ଉପେନ୍ଦ୍ର ଭଞ୍ଜଙ୍କର ବନ୍ଦନା ଗାଇଛନ୍ତି । କେବଳ ପଣ୍ଡିତ ବା କବି ଭାବରେ ଏମାନେ ନନ୍ଦକିଶୋରଙ୍କର ଚିତ୍ତଭୂମିକୁ ଆଲୋଡ଼ିତ କରିନାହାନ୍ତି । ଓଡ଼ିଶାର ପଣ୍ଡିତ ବା କବି ହିସାବରେ ନନ୍ଦକିଶୋରଙ୍କ ଅବଚେତନରେ ଏମାନଙ୍କର ପ୍ରତିଷ୍ଠା । କଳ୍ପିତ ଓଡ଼ିଆଜାତିକୁ ଜାତୀୟତା ମନ୍ତ୍ରରେ ଅନୁପ୍ରେରିତ କରିବା ପାଇଁ ଓ ସେମାନଙ୍କ ମଧ୍ୟରେ ଏକ ସଂସ୍କୃତି-ଭାବ ଜାଗ୍ରତ କରିବା ପାଇଁ କବି ସେମାନଙ୍କୁ ଏକ ମହିମାନ୍ୱିତ ଐତିହ୍ୟର ଉତ୍ତରାଧିକାରୀ ମର୍ଯ୍ୟାଦା ପ୍ରଦାନ କରିଛନ୍ତି । ବହୁ କୀର୍ତ୍ତିରାଜିର ଆଲୋକରେ ଓଡ଼ିଆ-ଐତିହ୍ୟ ଭାସ୍ୱର :

କୋଟି କୋଟି ବୌଦ୍ଧ ଶିବ ବିଷ୍ଣୁ ତୀର୍ଥରାଜି

ପୂରୁବ ଗୌରବ ତୋର ପଚାରନ୍ତି ଆଜି ।

କେତେ କର୍ମ ଧର୍ମବୀର ଜନମିଲେ କୋଳେ

କେତେ କବି ଗାଇଗଲେ କାବ୍ୟାବଳୀ ଭୋଳେ ।

(ନନ୍ଦକିଶୋର ଗ୍ରନ୍ଥାବଳୀ : ପୃ-୩୪୩)

ଏହି କେତେ କବିଙ୍କ ମଧ୍ୟରେ ସାରଳା ଦାସ ଓ ଉପେନ୍ଦ୍ର ଭଞ୍ଜଙ୍କ ବ୍ୟତୀତ ଅଛନ୍ତି ଜଗନ୍ନାଥ, ବଳରାମ, ଅଚ୍ୟୁତ,ଅନନ୍ତ, ଅରକ୍ଷିତ, ଦୀନକୃଷ୍ଣ, ଯଶୋବନ୍ତ, ବୀର ସିଂହ ଓ କୃଷ୍ଣ ସିଂହ ପ୍ରମୁଖ । ଏହି ସିଦ୍ଧ ସାଧକମାନେ ଓଡ଼ିଆ ଭାଷା ଓ ସାହିତ୍ୟକୁ ସଂଗଠିତ କରିଛନ୍ତି, ନୂଆ ତତ୍ତ୍ୱ ପ୍ରଚାର କରି ଓଡ଼ିଆ ଅସ୍ମିତା ପ୍ରତିଷ୍ଠା କରିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ଭଳି ତାଙ୍କ ସମୟର ଅତି ବିତର୍କିତ କବିଙ୍କର ବନ୍ଦନା ସେ ଏହି ଦୃଷ୍ଟିରୁ ହିଁ କରିଛନ୍ତି :

ତୁମ୍ଭ ଘେନି ମାତୃଭାଷା ସାହିତ୍ୟ-ଶାଳିନୀ<br>
ତୁମ୍ଭ ଯୋଗୁଁ ମାତୃଭାଷା ଆଜି ହେ ମାନିନୀ ।<br>
x x x x x x x x x<br>
ତୁମ୍ଭ ବିନା ହଇରାଣ ଜାତୀୟ ସାହିତ୍ୟ<br>
ଉତ୍କଳ-ସନ୍ତାନେ ହୋଇ ଥାଆନ୍ତେ ପତିତ ।<br>
ତୁମ୍ଭ ରକ୍ତ-ସିକ୍ତ-ଭୂମି-ଉଷ୍ଣ-ତରୁ-ଫଳ<br>
ଖାଇଣ ଜୀବନ ଦାନ ପାଇଛି ଉତ୍କଳ ।

(ନନ୍ଦକିଶୋର ଗ୍ରନ୍ଥାବଳୀ : ପୃ. ୩୫୩-୫୪)

ଓଡ଼ିଆ ଜାତି ହୁଏତ ଉପେନ୍ଦ୍ର ଭଞ୍ଜଙ୍କ ଭଳି ଜାତୀୟ ବୀରଙ୍କୁ ନେଇ ଗର୍ବିତ । କିନ୍ତୁ କେବଳ ସେମାନଙ୍କର ପୂଜା କଲେ ନବଯୁଗର ଆବାହନ ହେବନାହିଁ । ଓଡ଼ିଶାରେ ଯେଉଁମାନେ ନୂଆଯୁଗର ଅଗ୍ରପଥିକ, ସେହି ଗୁରୁ ସଖାମାନଙ୍କ ପ୍ରତି ଶ୍ରଦ୍ଧା-ନିବେଦନ ନ କଲେ ନବଯୁଗର ଚାରଣଗୀତି ପୂର୍ଣ୍ଣାଙ୍ଗ ହେବନାହିଁ । ନନ୍ଦକିଶୋର କେତେବେଳେ ସ୍ୱତନ୍ତ୍ର ଭାବରେ ଓ ଅନ୍ୟ କେତେବେଳେ ସାମଗ୍ରିକ ଭାବରେ ସମକାଳୀନ ଓଡ଼ିଆ କବି, ଜନନାୟକ ଓ ବୁଦ୍ଧିଜୀବୀମାନଙ୍କୁ ଶ୍ରଦ୍ଧା-ନିବେଦନ କରିଛନ୍ତି । ଉଭୟ ଗଦ୍ୟ ଓ ପଦ୍ୟରେ ତାଙ୍କ ଶ୍ରଦ୍ଧା ଓ ପୂଜାର ଅର୍ଘ୍ୟ ନିବେଦିତ । ସୁଲକ୍ଷଣା ଦେବୀ, ବୈକୁଣ୍ଠ ନାଥ ପୂଜାରୀଙ୍କ ଭଳି ଅଳ୍ପଜ୍ଞାତ କବୟତ୍ରୀ ଓ ବୁଦ୍ଧିଜୀବୀଙ୍କ ଠାରୁ ଅତି ପରିଚିତ କବି ମଧୁସୂଦନ, ରାଧାନାଥ ଓ ଗଙ୍ଗାଧରଙ୍କ ପର୍ଯ୍ୟନ୍ତ ବହୁ ସମକାଳୀନ ମନିଷୀଙ୍କୁ କବିତା ମାଧ୍ୟମରେ ସେ ପରିଚିତ କରେଇଛନ୍ତି; ପୂଜ୍ୟପୂଜାର ପରଂପରାକୁ ଦୃଢ କରିଛନ୍ତି ।

ବ୍ୟକ୍ତିଗତ ପରିଚୟ ନ ଥାଇ ମଧ୍ୟ ଗଂଗାଧରଙ୍କ ନୀରବ ଲେଖନୀକୁ ଚଳଚଂଚଳ କରିବା ଉଦ୍ଦେଶ୍ୟରେ ସେ 'ଇନ୍ଦୁମତୀ କାବ୍ୟପ୍ରଣେତା ଗଙ୍ଗାଧର ମେହେରଙ୍କ ପ୍ରତି' କବିତା ରଚନା କରିଛନ୍ତି । ତାଙ୍କ ଭିତରେ ଥିବା ଓଡ଼ିଶା-ହିତୈଷୀ ହୃଦୟ ଗଙ୍ଗାଧରଙ୍କ କଷ୍ଟିତ-ଦୁଃଖ ବିଷୟରେ ଚିନ୍ତିତ ହୋଇ ବେଦନାରେ ଆହତ । ଏହି ବେଦନାହତ ସ୍ୱରର ଝଙ୍କାର ଉପରୋକ୍ତ କବିତାକୁ ସୁପରିଚିତ କରିଛି । ସାମନ୍ତ ଚନ୍ଦ୍ରଶେଖର, ମିଷ୍ଟର ଦାସ, ଶ୍ରୀରାମଚନ୍ଦ୍ର ଭଞ୍ଜ ପ୍ରମୁଖ ମଧ୍ୟ ତାଙ୍କ କବିତା ମାଧ୍ୟମରେ ସମ୍ବର୍ଦ୍ଧିତ । ସମକାଳୀନ ଓଡ଼ିଶାର କବି, ସାହିତ୍ୟକ, ଦେଶସେବକ ଓ ବୁଦ୍ଧିଜୀବୀମାନଙ୍କୁ ନେଇ ନନ୍ଦକିଶୋରଙ୍କ ଭଳି ଏତେ କବିତା ଅନ୍ୟ କୌଣସି କବି ରଚନା କରିନାହାନ୍ତି । ଉପରୋକ୍ତ କବିତାଗୁଡ଼ିକ ମଧ୍ୟ ଦେଇ ନନ୍ଦକିଶୋର ଊନବିଂଶ ଶତାବ୍ଦୀର ଶେଷଭାଗ ଓ ଆଦ୍ୟ ବିଂଶ ଶତାବ୍ଦୀର ଓଡ଼ିଶାରେ ଯେଉଁ ପରିବର୍ତ୍ତନ ସଂଘଟିତ ହୋଇଥିଲା ତାହାର ଚିତ୍ର ଉପସ୍ଥାପନ କରିଛନ୍ତି । ନନ୍ଦକିଶୋରଙ୍କ ଦୃଷ୍ଟିରେ ଆଧୁନିକ କାଳର ଏହି ମନୀଷୀଗଣଙ୍କର ସାଧନା ଓଡ଼ିଶାକୁ ନବଜନ୍ମ ଦେଇଛି, ତାହାର ପ୍ରାଚୀନ ଗୌରବ କେତେକାଂଶରେ ଫେରାଇ ଆଣିଛି :

ରାଧାନାଥ, ମଧୁ, ଫକୀରମୋହନ
 ରାମଶଙ୍କରାଦି ଲେଖକ କବି
ଫେରାଇ ଅଛନ୍ତି କିଛୁଟେ ମୋହର,
 ପୁରାତନ ଯୁଗ ଗୌରବ-ରବି ।

(ନନ୍ଦକିଶୋର ଗ୍ରନ୍ଥାବଳୀ : ପୃ-୩୧୪)

ନନ୍ଦକିଶୋରଙ୍କ ଅନୁରୂପ କବିତାଗୁଡ଼ିକ କେବଳ ବ୍ୟକ୍ତିବିଶେଷ ପ୍ରତି ଶ୍ରଦ୍ଧାର ପରିଚୟ ନୁହେଁ । ଏଗୁଡ଼ିକ ନବ-ଉତ୍କଳ ଓ ନବଯୁଗର ଚାରଣ-ଗୀତି । ଆଧୁନିକ ଯୁଗର ପ୍ରଗତି ଓ ମହିମା ଉକ୍ତ କବିତା ଗୁଡ଼ିକର ଯଥାର୍ଥ ବିଷୟ ।

ନନ୍ଦକିଶୋର ନବଯୁଗକୁ ନୂତନ ପରିଧେୟ ସହ ବୀରବେଶରେ ଉପସ୍ଥିତ କରାଇଛନ୍ତି । ଏହି ଦିଗ୍‌ବିଜୟୀ ନବଯୁଗର ସମ୍ବର୍ଦ୍ଧନା ତେଣୁ ବୀରୋଚିତ ହେବା ଉଚିତ । ବୀରମାନଙ୍କୁ ସମ୍ବର୍ଦ୍ଧନା କରିବାର ରୀତି ଆମ୍ଭ ଦେଶରେ ଅତି ପ୍ରାଚୀନ କାଳରୁ ପ୍ରଚଳିତ । ବୀରର ମଙ୍ଗଳ କାମନା

କରିବା ଓ ମନ୍ତ୍ରଶକ୍ତିରେ ତାକୁ ଉଦ୍‌ବୁଦ୍ଧ ତଥା ଶକ୍ତିଶାଳୀ କରିବା ଉଦ୍ଦେଶ୍ୟରେ ବ୍ରାହ୍ମଣମାନେ; ତାକୁ ରାଜସିକ ଭାବରେ ସଂଚାଳିତ କରି ପ୍ରାଣୋତ୍ସର୍ଗ ପ୍ରେରଣାରେ ଅନୁପ୍ରେରିତ କରିବା ପାଇଁ କ୍ଷତ୍ରିୟମାନେ; ତା'ର ଗୌରବକୁ ପ୍ରଚାର କରିବା ଲାଗି ଶୂଦ୍ରବର୍ଣ୍ଣର ସୂତମାନେ ବୀରଗାଥା ଗାନ କରିଥାନ୍ତି । ଏହି ତିନି ପର୍ଯ୍ୟାୟର ଗାୟକ ମାନଙ୍କୁ କୁହାଯାଏ ଚାରଣ । ନନ୍ଦକିଶୋର ତାଙ୍କ କବିତା ଗୁଡ଼ିକ ମଧ୍ୟ ଦେଇ ବେଳେବେଳେ ନୂତନ ଯୁଗ ପାଇଁ ମନ୍ତ୍ର ରଚନା କରିଛନ୍ତି । ଉଚ୍ଚ ମଞ୍ଚରୁ ଜାତି ଉଦ୍ଦେଶ୍ୟରେ ଉଦ୍‌ବୋଧନ ଦେଇଛନ୍ତି । ମାନ୍ତ୍ରିକ ନନ୍ଦକିଶୋର ହେଉଛନ୍ତି ନୂତନ ଯୁଗର ବୁଦ୍ଧିଜୀବୀ, ଶିକ୍ଷକ ଓ ବ୍ରାହ୍ମଣ । ପୁଣି କେତେବେଳେ ସେ ସମଯୋଦ୍ଧାମାନଙ୍କ ଉଦ୍ଦେଶ୍ୟରେ ବନ୍ଦନା-ଗୀତି ରଚନା କରିଛନ୍ତି : ନବଯୁଗର ଅନ୍ୟତମ ପଥ ପ୍ରଦର୍ଶକ ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ସେତେବେଳେ ସେ କ୍ଷତ୍ରିୟ । ବେଳେବେଳେ ସେ ସୂତ-ଔପନିବେଶିକ-ପ୍ରଭୁଙ୍କ ଗୌରବ-ଗାଥାର ଗାୟକ । ଏହି ତିନି ଜାତିର ଚାରଣ-ଭୂମିକା ସମକାଳରେ ନିର୍ବାହ କରିଥିବାରୁ ତାଙ୍କ ଚାରଣ-କବିତା ଗୁଡ଼ିକ ସ୍ୱ-ବିରୋଧରେ ଜଟିଳ । ଏହି ଜଟିଳତାର ଗ୍ରନ୍ଥି-ମୋଚନ ଅଭାବରେ ନନ୍ଦକିଶୋରଙ୍କ କବିତାର ଯଥାର୍ଥ ଅଧ୍ୟୟନ ଅସମ୍ଭବ । □

# ଉତ୍କଳୀୟ ନାରୀସମାଜ ଓ ନନ୍ଦକିଶୋର

## ❑ ଶରତ ଚନ୍ଦ୍ର ନାୟକ

ପଲ୍ଲୀପ୍ରାଣତା ଓ ବର୍ଷାପ୍ରବଣତା ବ୍ୟତୀତ ନନ୍ଦକିଶୋରଙ୍କ କାବ୍ୟିକ ବ୍ୟକ୍ତିତ୍ୱର ଅନ୍ୟ ଏକ ଦିଗ ହେଉଛି ନାରୀ ସମ୍ବେଦନଶୀଳତା । ଓଡ଼ିଆ ନାରୀର ବେଦନା ଓ ବ୍ୟଥାରେ ବ୍ୟଥିତ କବି ନନ୍ଦକିଶୋର ନିଜ ସାରସ୍ୱତ ସୃଷ୍ଟିରେ ଯେଉଁଠି ସାମାନ୍ୟ ଅବକାଶ ପାଇଛନ୍ତି ସେଇଠି ନାରୀର ଅସହାୟତା ଓ ହତାଶାର କରୁଣ ଚିତ୍ର ଆଙ୍କି ଯାଇଛନ୍ତି ।

ଫକୀରମୋହନ ସେନାପତିଙ୍କ 'ରାମରଥ କଥା', 'ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ', 'ବାର ବିଳାସିନୀ', 'ହିନ୍ଦୁ ବିଧବା' ଆଦି କବିତା ଏବଂ 'ରେବତୀ', 'ମାଧ ମହାନ୍ତିଙ୍କ କନ୍ୟାସୁନା' ଆଦି ଗଳ୍ପ, ଭକ୍ତକବି ମଧୁସୂଦନଙ୍କ 'ବସନ୍ତ ଗାଥା'ର 'ପତିତାରମଣୀ' କବିତା ଏବଂ ରାମଶଙ୍କର ରାୟଙ୍କ 'ବୁଢ଼ାବର ପ୍ରହସନ', 'କାଞ୍ଚନମାଳୀ' ଓ 'ଲୀଳାବତୀ' ନାଟକରେ ନାରୀ ସମାଜର କେତୋଟି ମୂଳ ସମସ୍ୟା ଉପରେ ଆଲୋକପାତ କରାଯାଇଛି । ତେବେ ନନ୍ଦକିଶୋର ନାରୀସମାଜର ବିଭିନ୍ନ ସମସ୍ୟା ଯେପରି ବ୍ୟାପକ, ଆନ୍ତରିକ ଏବଂ ସ୍ପର୍ଶକାତରଭାବେ ବର୍ଣ୍ଣନା କରିଯାଇଛନ୍ତି, ଓଡ଼ିଆ ସାହିତ୍ୟରେ ଆଉ କ୍ୱଚିତ ସ୍ଥଳରେ ସେପରି ହୋଇଛି ବୋଲି ମନେହୁଏ । ନନ୍ଦକିଶୋରଙ୍କ ପରବର୍ତ୍ତୀକାଳରେ ସମ୍ଭବତଃ କୁନ୍ତଳାକୁମାରୀ ଏକମାତ୍ର ଉଲ୍ଲେଖଯୋଗ୍ୟ ସାହିତ୍ୟକ, ଯାହାଙ୍କ ସୃଷ୍ଟି ଉତ୍କଳୀୟ ନାରୀସମାଜ ଭିତ୍ତିକ ବିଭିନ୍ନ ସମସ୍ୟାର ଚିତ୍ର ପ୍ରଦାନରେ ଅତ୍ୟନ୍ତ ଉଦାର ଓ ଓଜସ୍ୱଳ । ସଂସ୍କାରକ ଶ୍ରୀବତ୍ସ ପଣ୍ଡା ଓ ସଂସ୍କାରକ ବୈରାଗୀ ମିଶ୍ରଙ୍କ ଉଦ୍ୟମ ଓ ଅବଦାନ ଏ ପ୍ରସଙ୍ଗରେ ସ୍ମରଣୀୟ । କିନ୍ତୁ ସେମାନଙ୍କ ଅଧିକାଂଶସୃଷ୍ଟି ସାହିତ୍ୟ ନହୋଇ ସଂସ୍କାର ସ୍ତୋତ୍ରାବଳୀରେ ପରିଣତ ହୋଇପଡ଼ିଛି । ଫକୀରମୋହନଙ୍କୁ ବାଦଦେଲେ, ଓଡ଼ିଆ ସାହିତ୍ୟରେ ନନ୍ଦକିଶୋର ହେଉଛନ୍ତି ଏକମାତ୍ର ସଫଳ ସ୍ରଷ୍ଟା, ଯାହାଙ୍କ ଏକାଧିକ କୃତି ଏକାନ୍ତ ସଂସ୍କାର ଧର୍ମୀ ଓ ପ୍ରଚାର ସର୍ବସ୍ୱ ହୋଇ ମଧ୍ୟ ଅପୂର୍ବ ଶିଳ୍ପ ଚାତୁର୍ଯ୍ୟରେ ରସାଣିତ ହୋଇ ଅତ୍ୟନ୍ତ

ମହୀୟାନ ହୋଇ ଉଠିଛି । ଏଦୃଷ୍ଟିରୁ ତାଙ୍କର 'ଢେମାଦେଈ', 'ଓଡ଼ିଆ ଲଳନା' ଆଦି କବିତା ଓ 'କନକଲତା' ଉପନ୍ୟାସର ପ୍ରଥମାର୍ଦ୍ଧ ନିଶ୍ଚିତଭାବେ ଉଲ୍ଲେଖନୀୟ ।

" ୧୯୦୦ ମସିହାରେ କବି (ନନ୍ଦକିଶୋର)ଙ୍କର 'ଓଡ଼ିଆ ଲଳନା' ବ୍ୟଙ୍ଗ କବିତା 'ଉତ୍କଳ-ସାହିତ୍ୟ' ପତ୍ରିକାରେ 'ଶ୍ରୀ' ନାମରେ ପ୍ରକାଶିତ ହୋଇଥିଲା । ଏଥେନି ଶିକ୍ଷିତ ଓଡ଼ିଆମାନଙ୍କ ମହଲରେ ଚାଞ୍ଚଲ୍ୟ ଖେଳି ଯାଇଥିଲା । କବି ରାଧାନାଥ ମଧ୍ୟ ଏଥିରେ ବିଚଳିତ ହୋଇ 'ଉତ୍କଳ-ସାହିତ୍ୟ' ସମ୍ପାଦକ ଶ୍ରୀ ବିଶ୍ୱନାଥ କରଙ୍କୁ ହୁଗୁଳିଠାରୁ ଲେଖିଥିଲେ : 'ଏପରି କବିତା ପ୍ରକାଶ କରିବା ଦ୍ୱାରା ବିଜ୍ଞତାର ପରିଚୟ ଦେଇନାହାନ୍ତି ।' ଶ୍ରୀ ବ୍ରଜସୁନ୍ଦର ଦାସ, ଶ୍ରୀ ଗୋପବନ୍ଧୁ ଦାସ ଓ ଶ୍ରୀ ହରେକୃଷ୍ଣ ନାୟକ 'କର୍ତ୍ତବ୍ୟ ବୋଧିନୀ' ସଭା ପକ୍ଷରୁ ଓଡ଼ିଆ ନାରୀର ବେଶଭୂଷାର ନିନ୍ଦା କରାଯାଇଥିବାରୁ ପ୍ରତିବାଦ କରି ସାହିତ୍ୟ (ଉତ୍କଳ ସାହିତ୍ୟ) ସମ୍ପାଦକଙ୍କୁ ଜଣାଇଥିଲେ । ଶିକ୍ଷିତ ଓଡ଼ିଆମାନେ ମନେ କରିଥିଲେ କେହି ବଙ୍ଗାଳି ଓଡ଼ିଆକୁ ବିଦ୍ରୂପ କରି ଏପରି ଲେଖିଅଛି । ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ, ଶ୍ରୀ ମଦନମୋହନ ଦାସ ଓକିଲମାନେ ମାନହାନି ମକଦ୍ଦମା ଦାଏର କରିବା ଉଦ୍ଦେଶ୍ୟରେ ଉତ୍କଳ-ସାହିତ୍ୟ ସମ୍ପାଦକଙ୍କଠାରୁ ଲେଖକଙ୍କ ନାମ ଜାଣିବାକୁ ଦାବୀ କରିଥିଲେ । ସମ୍ପାଦକ ସମ୍ପାଦକୀୟ ଶିଷ୍ଟତା ରକ୍ଷାକରି ଲେଖକଙ୍କ ନାମ ଜଣାଇଲେ ନାହିଁ । ତେଣୁ ସମ୍ପାଦକଙ୍କ ନାମରେ ମାନହାନି ମୋକଦ୍ଦମା କରିବାକୁ ସ୍ଥିର କଲେ । ପରେ ଜଣାପଡ଼ିଲା ଯେ, ଏ କବିତାର ଲେଖକ ଜଣେ ଓଡ଼ିଆ ଏବଂ କବିତାଟି ସମାଜ ସଂସ୍କାର ଉଦ୍ଦେଶ୍ୟରେ ଲିଖିତ, ସେତେବେଳେ ସେମାନେ କାର୍ଯ୍ୟରୁ ବିରତ ହେଲେ ।" (୧) 'ଉତ୍କଳ ସାହିତ୍ୟ' ସମ୍ପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ଏ ସମ୍ପର୍କରେ ସୂଚନା ଦେଇ କହିଛନ୍ତି :

" କିଛିକାଳ ପୂର୍ବେ ଉତ୍କଳ-ସାହିତ୍ୟରେ ଗୋଟିଏ କବିତା ପ୍ରକାଶିତ ହେବାରୁ ଆମ୍ଭମାନଙ୍କ କେତେଜଣ ବନ୍ଧୁ କହିଥିଲେ 'ଆପଣଙ୍କ ଛଡ଼ା କୌଣସି ଉତ୍କଳ ସନ୍ତାନ ସମ୍ପାଦକ ଥିଲେ, ଏପରି କବିତା କଦାପି ପତ୍ରିକାରେ ସ୍ଥାନ ପାଇନଥାନ୍ତା'........ ।"(୨)

(୧) ଜୀବନୀ : ନନ୍ଦକିଶୋର ଗ୍ରନ୍ଥାବଳୀ. ପୃ-୧୨

(୨)'ଉତ୍କଳ ସାହିତ୍ୟ' : ଷଷ୍ଠ ଭାଗ ତୃତୀୟ ସଂଖ୍ୟା. ପୃ-୬୫

କବି ନନ୍ଦକିଶୋରଙ୍କ ଏହି ବ୍ୟଙ୍ଗ କବିତା ''ଓଡ଼ିଆ ଲଳନା'' ଓଡ଼ିଆ ସମାଜରେ ଏପରି ବିରୂପ ପ୍ରତିକ୍ରିୟା ସୃଷ୍ଟି କରିଥିଲା ଯେ, 'ଉତ୍କଳ-ସାହିତ୍ୟ' ପତ୍ରିକାରେ ଏହା ପ୍ରକାଶିତ ହୋଇଥିବା ଯୋଗୁଁ, ଏକା ସପ୍ତାହରେ ସାହିତ୍ୟର ଗ୍ରାହକ ସଂଖ୍ୟା ୫୦ କମି ଯାଇଥିଲା । (୩)

'ଓଡ଼ିଆ-ଲଳନା' କବିତାଟି ପ୍ରକୃତରେ 'ଉତ୍କଳ-ସାହିତ୍ୟ' ପଞ୍ଚମବର୍ଷ ଦ୍ୱିତୀୟ ସଂଖ୍ୟା (୧୯୦୧-ମେ)ରେ ପ୍ରଥମ ପ୍ରକାଶ ପାଇଥିଲା । ବସ୍ତୁତଃ ଏହାଦ୍ୱାରା ନନ୍ଦକିଶୋରଙ୍କପ୍ରତି ଶିକ୍ଷିତ ସମାଜର ଦୃଷ୍ଟି ବିଶେଷ ଭାବେ ଆକର୍ଷିତ ହେଲା । ପାଠକଙ୍କ କୌତୂହଳ ଚରିତାର୍ଥ କରିବା ନିମନ୍ତେ ଯୁବକ ନନ୍ଦକିଶୋରଙ୍କ ସେହି ବହୁ ବିତର୍କିତ କବିତା 'ଓଡ଼ିଆ ଲଳନା'ର କିଛି ଅଂଶ ଏଠାରେ ଉଦ୍ଧାର କରାଗଲା :

'କେ ଦେଖିବ ଦେଖ ଆସି ଓଡ଼ିଆ ଅବଳା
ଆଖିକଣୁ କାନଯାଏ ନାଇଛି ସେ କଳା ।
ମଥାରେ ସିନ୍ଦୂର ଥୋପା ଅଢ଼େଇ କରିସି
କେତେକଷ୍ଟେ ନାଇଚି ସେ ଦେଖିଣ ଆରିସି ।

x x x x x x x x

ହାତେ ତାଡ଼, ବାଜ ଚୁଡ଼ି, ତାଇତ, ଆସିଆ
ପଇଛ, ମଗର ମୁଣ୍ଡି, ଶଙ୍ଖା ତେଉଁରିଆ ।
ଦେହଯାକ ଗହଣାରେ ପୂର୍ଣ୍ଣ ଷୋଳକଳା
କେ ଦେଖିବ ଦେଖ ଆସି ଓଡ଼ିଆ ଅବଳା ।

x x x x x x x x

ମୋଟା ଶାଢ଼ୀ ଓହମୁଣ୍ଡିଆ ହଳଦୀ ଗରଗର
ମାସେ ଦୁଇମାସେ ଥରେ ଯାଏ ଧୋବାଘର ।

(୩) ଗୋପାଳ ଚନ୍ଦ୍ର ପ୍ରହରାଜ : ପଲ୍ଲୀକବି ନନ୍ଦକିଶୋର ସ୍ମୃତି ପୂଜା-'ଉତ୍କଳ ସାହିତ୍ୟ': ୩୯ଶ ଭାଗ ଦ୍ୱିତୀୟ ସଂଖ୍ୟା. ପୃ-୨୧୮

ଶାଶୁଘରେ କଣେ ପଶି ଲାଜେ ସିଝୁଥାଇ
ବାପଘରେ ପାନଖାଇ ବୁଲେ ସାଇ ସାଇ
ଏପରି ରମଣୀ ଯେବେ ନ ଦେଖିଛ ନନା
ଦେଖ ଧାଇଁ ଆସି ଓଡ଼ିଆ ଲଳନା ।'

ବିଭିନ୍ନ ସମୟରେ ଲିଖିତ ନନ୍ଦକିଶୋରଙ୍କର ସଂଖ୍ୟାଧିକ କବିତାରେ ଉତ୍କଳୀୟ ନାରୀର ବେଦନାର ଲିପି ବିସ୍ତୃତଭାବେ ରୂପ ପାଇଛି । 'ଉତ୍କଳ ଲଳନା' (୪) କବିତାରେ ଏକଦା ବୀର ପ୍ରସବିନୀ ଉତ୍କଳ-ନାରୀର 'ଦେଶାଚାର ଘୋର ନିର୍ଦ୍ଦୟ ନିଗଡ଼େ' ବିଷାଦ ପ୍ରତିମୂର୍ତ୍ତି ଦେଖି କବି ମ୍ରିୟମାଣ ହୋଇ ପଡ଼ିଛନ୍ତି । 'ପଲ୍ଲୀର ବିଳାସୀ ଯୁବକ' କବିତାରେ ପଲ୍ଲୀବହୁଳ ଉତ୍କଳର ବିଳାସୀ ଧନୀ ଯୁବକଗଣଙ୍କୁ 'ସୁକୁମାର ପ୍ରାଣା ସରଳା ବାଳିକା'ର ସର୍ବନାଶ କରି କୁଳ କଳଙ୍କିନୀ ନ କରିବା ପାଇଁ କବି ଚେତାବନୀ ଶୁଣାଇଛନ୍ତି ।'କଳଙ୍କିନୀ' (୫) କବିତାରେ କବି ମୁହୂର୍ତ୍ତକର ଉତ୍ତେଜନାର ଚାପରେ ଓ ଲମ୍ପଟ ପୁରୁଷର ଚାଟୁବାଣୀରେ ଆଗପଛ ନବିଚାରି ଜାତିକୁଳ ବାପଭାଇ ହରାଇଥିବା କଳଙ୍କିନୀ ନାରୀର ଅନୁତାପ ଅନୁଶୋଚନାର କରୁଣ କାହାଣୀ ଅତି ମର୍ମସ୍ପର୍ଶୀ ଭାବେ ବର୍ଣ୍ଣନା କରିଯାଇଛନ୍ତି । କ୍ଷଣିକ ଉନ୍ମାଦନା ଚାପରେ ଘଟିତ ପାପର ପ୍ରାୟଶ୍ଚିତ ପାଇଁ ପୁରୁଷ ସମାଜ ଅନୁତପ୍ତା ନାରୀକୁ ସାମାନ୍ୟତମ ସୁଯୋଗ ଦିଏନା । ଫଳରେ ତା'ର :

'ଆହାରେ ! ନିଥନ୍ତେ ଯେବେ ମୋତେ ସମାଜରେ
ଆଚାରେ ରହନ୍ତି ଯାଇଁ ପୁଣି ମୁହିଁ ଘରେ ।
ଦିବସାନ୍ତେ ମୁହିଁ ହବିଷାନ୍ନ ଖାଇ
ସ୍ବଜନ ସେବାରେ ପ୍ରାଣ ଦିଅନ୍ତି ଲଗାଇ ।
ପରମ ପୁରୁଷେ ଭଜି ପ୍ରତି ତ୍ରିସନ୍ଧ୍ୟାରେ
ପରପୁରୁଷ-ମୁଖକୁ ନ ଅନାନ୍ତି ବାରେ ।'

(୪)'ପଲ୍ଲୀଚିତ୍ର' : ତୃତୀୟଭାଗ : ନନ୍ଦକିଶୋର ଗ୍ରନ୍ଥାବଳୀ. ପୃ-୬୯
(୫) 'ତରଙ୍ଗିଣୀ' : ନନ୍ଦକିଶୋର ଗ୍ରନ୍ଥାବଳୀ. ପୃ-୨୩୮

ଏ ସମସ୍ତ ଆତୁର ଆବେଦନ ନିବେଦନ ଅରଣ୍ୟରୋଦନରେ ପରିଣତ ହୁଏ ।

ଅସମ୍ପୂର୍ଣ୍ଣ 'ତୀର୍ଥଯାତ୍ରା' (୬) କବିତାରେ କବି ଓଡ଼ିଶାର ସମଗ୍ର ପୁରୁଷ ସମାଜକୁ ଆକ୍ଷେପ କରିଛନ୍ତି । ଓଡ଼ିଆ ପୁରୁଷ ତୀର୍ଥାଟନରେ ବା ଭ୍ରମଣ ଉଦ୍ଦେଶ୍ୟରେ ବାହାରକୁ ଗଲାବେଳେ ସାଙ୍ଗରେ ନିଜ ସ୍ତ୍ରୀକୁ ନେବାରେ କୁଣ୍ଠିତ ହେଉଥିଲା । ଉତ୍କଳ ନାରୀର ସାରା ଜୀବନ ବିତୁଥିଲା ଅନ୍ଧାର ଘରକୋଣ ଓ ଧୂମାୟିତ ହାଣ୍ଡିଶାଳରେ । ପୁରୁଷମାନଙ୍କ ପ୍ରତି ନନ୍ଦକିଶୋରଙ୍କ ବ୍ୟଙ୍ଗୋକ୍ତି ଏ କବିତାଟିରେ ଲକ୍ଷ୍ୟ କରିବାର କଥା ।

'ନାରୀଶିକ୍ଷା ଅସତୀତ୍ୱ-ବୈଧବ୍ୟ-କାରଣ' ଏବଂ 'ନାରୀଶିକ୍ଷା ଅଟେ ମହା ଅଶୁଭ-ଆଗାର' ଆଦି ସ୍ୱାର୍ଥପର ପୁରୁଷର ଅପପ୍ରଚାରରେ କବି ଖେଦ ପ୍ରକାଶ କରିଛନ୍ତି ଓ 'ନାରୀଶିକ୍ଷା' (୭) କବିତାରେ ତୀବ୍ର ଭାବରେ ତାହା ଖଣ୍ଡନ କରିଛନ୍ତି । ଅବଳା ଦୁର୍ବଳା ନୁହେଁ । ସୁବିଧା, ସୁଯୋଗ ଓ ଅନୁକୂଳ ପରିବେଶରେ ନାରୀ ପୁରୁଷର ସମକକ୍ଷ ହୋଇ ନିଜ ଜ୍ଞାନଗାରିମାର ବିଜୟ ବୈଜୟନ୍ତୀ ଉଡ଼ାଇପାରେ । ତେଣୁ ସମାଜରେ ପୁରୁଷସହ ନାରୀର ସମ ଅଧିକାର ପ୍ରାପ୍ୟ ବୋଲି କବି 'ନର-ନାରୀ' (୮) କବିତାରେ ଯୁକ୍ତି ବାଢ଼ିଛନ୍ତି । ସମାଜରେ ପୁରୁଷର ଏକାଧିପତ୍ୟକୁ କୌଣସିମତେ ମାନିନେବାକୁ ନନ୍ଦକିଶୋର ପ୍ରସ୍ତୁତ ନଥିଲେ । ସ୍ୱାର୍ଥପର ପୁରୁଷ ସମାଜ ଉପରେ ତାଙ୍କର ଗଭୀର ଅସନ୍ତୋଷ ଓ ପ୍ରତିବାଦର ସ୍ୱର 'ନର-ନାରୀ' କବିତାରେ ଅତି ତୀବ୍ର ହୋଇ ଉଠିଛି ।

'ନର ଓ ନାରୀ' (୯) ନାମକ ଅନ୍ୟଏକ କବିତାରେ ନାରୀ-ଦରଦୀ ନନ୍ଦକିଶୋର ନାରୀ ମୁଖରେ ସ୍ୱାର୍ଥାନ୍ଧ ପୁରୁଷର ଅସଲ ସ୍ୱରୂପଟିକୁ ଅବିକୃତ ଭାବେ ଉଦ୍‌ଘାଟିତ କରି ଗାଇଛନ୍ତି :

---

(୬) 'ପ୍ରଭାତ ସଂଗୀତ' : ନନ୍ଦକିଶୋର ଗ୍ରନ୍ଥାବଳୀ. ପୃ-୫୧୧

(୭) 'ଚାରୁଚିତ୍ର' : ନନ୍ଦକିଶୋର ଗ୍ରନ୍ଥାବଳୀ. ପୃ-୨୮୨

(୮) 'ଚାରୁଚିତ୍ର' : ନନ୍ଦକିଶୋର ଗ୍ରନ୍ଥାବଳୀ. ପୃ-୨୮୧

(୯) 'ପ୍ରଭାତ ସଂଗୀତ' : ନନ୍ଦକିଶୋର ଗ୍ରନ୍ଥାବଳୀ.

'ନର--ଆଗୋ ନାରୀ ! ଅଟ ତୁମ୍ଭେ ଅତୀବ ଅଜ୍ଞାନୀ,

ନାରୀ--ତୁମ୍ଭ ଅତ୍ୟାଚାର ଫଳ ନୁହେଁ କି ତା ଜ୍ଞାନୀ ?

ନର--ନାରୀ ତୁମ ମଧ୍ୟେ ବହୁ ଅଛନ୍ତି ଅସତୀ

ନାରୀ--କିଏ ତାହା କରାଇଲା ଆହେ ଯତି-ଜାତି ?

x x x x x x x x

ନର--ନାରୀଙ୍କୁ ବିଶ୍ୱାସ ଶାସ୍ତ୍ରେ ଅଟେ ଅବିହିତ

ନାରୀ-- ସେମଧ୍ୟେ ତୁମ୍ଭର ମାତୃଦେବୀ ଅଛନ୍ତି ତ ?....'

କୁସଂସ୍କାର ଗ୍ରସ୍ତ ସମାଜରେ ପ୍ରଚଳିତ ବାଲ୍ୟବିଧବା, ବୃଦ୍ଧ ବିବାହ ଆଦି ନିଷ୍ଠୁର ପ୍ରଥା କବିଙ୍କୁ ମ୍ରିୟମାଣ କରିଛି । 'ବୃଦ୍ଧ ବିବାହ', 'ଉତ୍କଳ ଲଳନା', 'ବାଲ୍ୟବିଧବା' , 'ଜେମାଦେଈ', 'ବାଳ ବିଧବା' ଆଦି କବିତାରେ ଏ ଉଭୟ କୁପ୍ରଥା ବିରୁଦ୍ଧରେ କବିଙ୍କର ପ୍ରତିବାଦର ସ୍ୱର ସ୍ପଷ୍ଟ । ଅର୍ଥଲୋଲୁପ ପିତାମାତାଙ୍କ ନିର୍ଦ୍ଦୟ ନୃଶଂସ ଭୂମିକା ମଧ କବିଙ୍କ ସନ୍ଧାନୀ ଚକ୍ଷୁରୁ ବାଦ୍ ପଡ଼ିନି । ଏହି କରୁଣ ପରିବେଶକୁ ସବୁଠାରୁ ହୃଦ୍ୟ ଓ ମର୍ମସ୍ପର୍ଶୀ ଭାବେ ତୋଳିଧରି ପାରିଚି 'ଜେମା ଦେଈ' (୧୦) କବିତା :

' 'ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ି ଦେଲେ ପର

ଜେମା ଦେଈ ହରାଇଲେ ଆଜି ବୁଢ଼ାବର !

x x x x x x x x

ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ି ଦେଲେ ପର

ଜେମା ଦେଈ କାନ୍ଦୁଛନ୍ତି ଝୁରି ବୁଢ଼ାବର !

x x x x x x x x

ମୋର ବାପ ଭାଇ ମାଆ ଜନମ କଂସେଇ

ଅକାତ ପାଣିରେ ମୋତେ ଦେଲେ ଗୋ ଭସାଇ !

(୧୦) 'ବସନ୍ତକୋକିଳ' : ନନ୍ଦକିଶୋର ଗ୍ରନ୍ଥାବଳୀ.

ନିଷ୍ଠୁର ସମାଜ ତୋର କି ଦୋଷ ମୁଁ କହି
ଏ ବୟସରେ ଏ ବେଶକୁ କିମ୍ପା ମୁଁ ବହିଲି ?'

ନନ୍ଦକିଶୋରଙ୍କ ଲିଖିତ ଗଳ୍ପ 'ଲକ୍ଷ୍ମୀ' ସମାଜର କନ୍ୟାପଣ-ପ୍ରଥା ବିରୁଦ୍ଧରେ ଅଭିପ୍ରେତ ।

''କବିଙ୍କ 'ଲକ୍ଷ୍ମୀ' ଗଳ୍ପଟି ଗୋଟିଏ ବାସ୍ତବ ଘଟଣା ଅବଲମ୍ବନରେ ଲିଖିତ । ଗସ୍ତରେ ଥିଲାବେଳେ କବି ଏହି ଘଟଣ ଶୁଣି ଆସି ଫକୀର ମୋହନଙ୍କ ଆଗରେ ପ୍ରକାଶ କରିଥିଲେ । ଏହି କଥାଶୁଣି ବ୍ୟାସକବି 'ମାଧ ମହାନ୍ତିଙ୍କ କନ୍ୟାସୁନା' ଗଳ୍ପ ଲେଖିଲେ । ନନ୍ଦକିଶୋର 'ଲକ୍ଷ୍ମୀ' ଗଳ୍ପ ଲେଖିଲେ ।'' ( ୧୧ )

ତତ୍‌କାଳୀନ ସମାଜରେ ପ୍ରଚଳିତ ଏହି ନାରକୀୟ ବାସ୍ତବ ଘଟଣା ସଂସ୍କାରକ ନନ୍ଦକିଶୋରଙ୍କ ଲେଖନୀରେ ଏପରି ରୂପ ପାଇଛି : ''ବଳରାମ ଗୋତ୍ରୀ ବ୍ରାହ୍ମଣମାନେ ସମସ୍ତେ ଧନୀ । ଅନନ୍ତପୁର ଗ୍ରାମରେ ଦୁଃଖୀ ଖୁବ୍ ଊଣା । ଏମାନଙ୍କ ମଧ୍ୟରେ ଝିଅର ଯେତେ ବୟସ ଓ ସୁନ୍ଦର ପଣ, ତେତେ ଅଧିକ ଟଙ୍କାରେ ବିକାଯାଏ । ତେଣୁ ଲକ୍ଷ୍ମୀ ବିଭାଘରରେ ଏତେ ଡେ଼ରି । ଲକ୍ଷ୍ମୀର ବାପ ଧନୀମିଶ୍ର ଲକ୍ଷ୍ମୀର ବୟସ ଗଣି ୧୪୦୦ ଟଙ୍କା ହାକି ଅଛନ୍ତି । ଡା଼କ ଶୁଣି ଅନେକ ବାହୁଡ଼ି ଗଲେଣି । କେହି ୩୦୦କେହି ୫୦୦ ଯାଏ ଗଲେ । ରୂପ, କୁଳ, ଗୁଣ : କିଛି ସାହୁଏ ପତ୍ରରେ ପକାଇଲେ ନାହିଁ । କେବଳ ଟଙ୍କା ଯେ ଦେବ ସେ ଲକ୍ଷ୍ମୀକି ନେବ ।'' ( ୧୨ ) ମାସିକ 'ମୁକୁର'ରେ ନନ୍ଦକିଶୋରଙ୍କର ଏ ଗଳ୍ପଟି ପ୍ରକାଶ ପାଇବାର ଏକବର୍ଷ ପରେ ଓଡ଼ିଶାର ଏକ ବହୁ ପ୍ରଚାରିତ ଲୋକପ୍ରିୟ ସାପ୍ତାହିକ ଓଡ଼ିଆ ପତ୍ରିକାରେ କନ୍ୟାପଣ ଉପରେ ପ୍ରକାଶ ପାଇଥିବା ବିବରଣୀରେ ପାଠକେ ଅନୁରୂପ ଦୟନୀୟ ଚିତ୍ରର ପ୍ରତିଫଳନ ପାଇବେ :

''ଯାଜପୁର ଓ ଭଦ୍ରକ ସବ୍‌ଡ଼ିଭିଜନ ମଧ୍ୟରେ ଅନେକ ମସ୍ତାନୀ ବ୍ରାହ୍ମଣ ବାସ କରନ୍ତି । ସେମାନଙ୍କ ଜାତିରେ କନ୍ୟା ଅଳ୍ପହେତୁ ଏକ ଏକ କନ୍ୟା ସକାଶେ ବୟସ ଅନୁସାରେ ଟ୩୦୦ଙ୍କା

---

(୧୧) 'ଜୀବନୀ' : ନନ୍ଦକିଶୋର ଗ୍ରନ୍ଥାବଳୀ.

(୧୨) 'ଲକ୍ଷ୍ମୀ' : ନନ୍ଦକିଶୋର ଗ୍ରନ୍ଥାବଳୀ. ପୃ-୯୩୯

ଠାରୁ ଟ୫୦୦/୭୦୦ଙ୍କା ପର୍ଯ୍ୟନ୍ତ କନ୍ୟାସୁନା ନଦେଲେ କାହାରି ବିବାହ ଦେବାର ସାଧ ନାହିଁ । ଯେଉଁ ମସ୍ତାନୀ ବ୍ରାହ୍ମଣର ୩/୪ଗୋଟି କନ୍ୟା ଅଛି ତାହାଠାରୁ ଭାଗ୍ୟବାନ ଆଉ କେହି ନାହିଁ ବୋଇଲେ ହୁଏ । ଅନେକ ମସ୍ତାନୀ ବ୍ରାହ୍ମଣ ଟଙ୍କା ଅଭାବେ ୪୦ ବର୍ଷ ବୟସ ପର୍ଯ୍ୟନ୍ତ ବିବାହ ହୋଇ ପାରିନ୍ତି ନାହିଁ, ମଧ୍ୟ ଅନେକ କନ୍ୟାଙ୍କର ପିତା ପଣବୃଦ୍ଧି ଆଶାରେ ୧୭/୧୮ ବର୍ଷ ବୟସ ଯାଏ ଆପଣାର କନ୍ୟାକୁ ଅବିବାହିତା ଅବସ୍ଥାରେ ରଖି ବର ବୁଢ଼ାହେଉ ବା ଦରିଦ୍ର ହେଉ ସେଥିପ୍ରତି ଦୃଷ୍ଟି ନ ରଖି ଯେ ଅଧିକ ପଣ ଦେବାକୁ ସକ୍ଷମ ତାହାଙ୍କୁ ଉକ୍ତ ବୟୋଧିକ ପ୍ରୌଢ଼ାକନ୍ୟା ବିବାହ ଦିଅନ୍ତି ।''(୧୩)

ଏହି ସମୟରେ ସମାଜରେ କନ୍ୟାପଣ ପ୍ରଥା ବିରୁଦ୍ଧରେ ଜନମତ ପ୍ରକାଶ ପାଇଥିଲା । (୧୪) ଏଥିରେ 'ଲକ୍ଷ୍ମୀ' ଓ 'ମାଧ ମହାନ୍ତିଙ୍କ କନ୍ୟାସୁନା' ଗଳ୍ପରେ ଗାଳ୍ପିକ ଯାଥାକ୍ରମେ ନନ୍ଦକିଶୋର ଓ ଫକୀରମୋହନଙ୍କ ଅବଦାନ ମଧ୍ୟ ବାସ୍ତବରେ ଉଲ୍ଲେଖନୀୟ ।

---

(୧୩) 'ଉତ୍କଳ ଦୀପିକା' : ୧୪ ମାର୍ଚ୍ଚ, ୧୯୧୪/ପୃ. ୪୨

(୧୪) 'ଶ୍ରୀ ନାରାୟଣ ପରିଷଦ ସମିତିରେ ସ୍ମାର୍ତ୍ତ ବ୍ରାହ୍ମଣମାନଙ୍କର କନ୍ୟା ଶୁଳ୍କ ଗ୍ରହଣ ନିଷେଧ ପ୍ରାୟ ଅଧିକାଂଶ ଜାଣନ୍ତି । ଜଣେ ମଧୁପୁର ନିବାସୀ ବ୍ରାହ୍ମଣ ଗୋଟିଏ ୬ ବର୍ଷ ବୟସ୍କା କନ୍ୟାକୁ ଏକଶତ ଟଙ୍କାରେ ଆଣି ଗୋଟିଏ ୩୨ ବର୍ଷ ବୟସ୍କ ଯୁବକ ସହିତ ବିବାହ କରାଇବା ବିଷୟ ସମିତି ଜାଣେ । ସଭାପତି ଶ୍ରୀ ମଧୁପୁରାଧୀଶ୍ୱର ମହୋଦୟଙ୍କୁ ଜଣାଇବାରେ ପ୍ରଜାବତ୍ସଳ ଶ୍ରୀଯୁକ୍ତ ରାଜା ବାହାଦୂର ଉକ୍ତ ଟଙ୍କା ବରପକ୍ଷକୁ ଫେରସ୍ତ କରାଇ ଦେଇ କନ୍ୟା ବିବାହ ଯୋଗ୍ୟା ନୋହିଥିବାରୁ ବିବାହ ବନ୍ଦରଖି ସମସ୍ତ ବ୍ରାହ୍ମଣ ଜାତିର ଅଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି ।''

(ଉତ୍କଳ ଦୀପିକା : ୪ ତାରିଖ ଜୁଲାଇ, ୧୯୧୪/ ପୃ. ୧୦୭)

''କଟକର ମୋକ୍ତାର ଶ୍ରୀବାବୁ ଦାମୋଦର ମହାପାତ୍ର ହାତରୁ ପଇସା ଖର୍ଚ୍ଚ କରି ବରଣ୍ଡେଇ, ଅମୃତୀୟା, ବିରୁଡ଼, ଆଠଗଡ଼, ଭଣ୍ଡାରି ପୋଖରୀ ଆଦି ମସ୍ତାନୀ ବ୍ରାହ୍ମଣ ଅଧୁଷିତ ଅଞ୍ଚଳମାନ ଗସ୍ତକରି କନ୍ୟାଶୁଳ୍କ ପ୍ରଥାର ଅପକାରିତା ସମ୍ପର୍କରେ ଭାଷଣ ଦେଇ ବିପୁଳ ଜନମତ ସୃଷ୍ଟି କରିବାରେ ସକ୍ଷମ ହୋଇ ପାରିଥିଲେ ।'' (ଉତ୍କଳ ଦୀପିକା : ୧୪ ମାର୍ଚ୍ଚ, ୧୧୪/ପୃ. ୪୨)

'ବିଧବା ବିବାହ ଓ ସତୀତ୍ୱ' (୧୫) ପ୍ରବନ୍ଧର ସଂକ୍ଷିପ୍ତ ପରିସର ମଧ୍ୟରେ ସଂସ୍କାରକ ନନ୍ଦକିଶୋର ବୟସ୍କ ମୃତଦାରମାନଙ୍କ ନିକଟରେ ବିଧବା ବିବାହ ସପକ୍ଷରେ ଅତି ବଳିଷ୍ଠ ଓ ଅକାଟ୍ୟ ଯୁକ୍ତି ଉପସ୍ଥାପିତ କରିଛନ୍ତି ।

'କନକଲତା' ଉପନ୍ୟାସରେ ରାଜେନ୍ଦ୍ର ବାବୁଙ୍କ ବାଳ ବିଧବା ଉମାକୁ ବିବାହ କରିବା ପ୍ରସ୍ତାବକୁ ବଂଶ ଓ ସମାଜ ଭୟରେ ଧନଞ୍ଜୟ ବାବୁ ବିରୋଧ କଲାବେଳେ ସମାଜ ବିପ୍ଳବୀ ରାଜେନ୍ଦ୍ର କହିଛି : "ଛି ଧନଞ୍ଜୟ, ତୁମେ ବୟସରେ ବଢ଼ ହୋଇ ସଂସାର-ସୁଖ ଉପଭୋଗ କରିବ, ଅଥଚ ତୁମର କନିଷ୍ଠା ଭଗିନୀ ଯେ କି ଅକ୍ଷତ ଯୌବନା, ବିବାହ କଣ ଜାଣେ ନାହିଁ, ତାହାକୁ ଚିର ବୈଧବ୍ୟ ଯନ୍ତ୍ରଣାରେ ଦୀକ୍ଷିତ କରାଇବ । ତୁମେ ତୁମର ପିତା ମାତାଙ୍କ ଭୟ ଦେଖାଉଅଛ । ସେମାନେ ଯୌବନର ପ୍ରାନ୍ତରେ ଉପନୀତ ହୋଇ ବିଷୟ ସୁଖରୁ ନିଜକୁ ନିବୃତ୍ତ କରିପାରୁନାହାନ୍ତି, ଅଥଚ ଅପରିଚିତ ମୃତ ପୁରୁଷ ନିମିତ୍ତ ଚିର ବୈଧବ୍ୟ ଯନ୍ତ୍ରଣାରେ ସରଳା ଯୁବତୀକୁ ନିୟନ୍ତ୍ରିତ କରିବାକୁ ଦୃଢ଼ ପ୍ରତିଜ୍ଞ ହୋଇଛନ୍ତି ।.... ତୁମେ ଈଶ୍ୱର ସୃଷ୍ଟ ମାନବ, ଏ ସେହି ହସ୍ତ-ସୃଷ୍ଟା ମାନବୀ । ତୁମେ ଭାରତୀୟ ଶିକ୍ଷିତ ଯୁବକ, ଏ ଭାରତୀୟ ହିନ୍ଦୁ ବାଳିକା । ତୁମେ ସହୋଦର ଭ୍ରାତା, ଏ ସହୋଦରା ଭଗିନୀ । ବକ୍ଷରେ ହସ୍ତଦେଇ ଈଶ୍ୱରଙ୍କୁ ସାକ୍ଷୀ କରି ନିରପେକ୍ଷ ହୋଇ କହତ ଭାଇ ଧନଞ୍ଜୟ, ଏହାକୁ ଧର୍ମ ପଥରେ ରଖିବାର କେଉଁଟି ସଦୁପାୟ -- ମୁଁ ଏହାର ପ୍ରେମ ଭିକାରୀ, ଏ ମୋର ରୂପଗୁଣ ମୁଗ୍ଧା -- ମୋ ହସ୍ତରେ ଅର୍ପଣ କରିବା ଉଚିତ୍, ନା ନରକର ପଥରେ ପରିତ୍ୟାଗ କରିବା ଉଚିତ୍.....?" ( ୧୬ )

ଏ ସମସ୍ତ ଉକ୍ତି କେବଳ ରାଜେନ୍ଦ୍ରର ନୁହେଁ, ନାରୀ ସଂବେଦନାଶୀଳ ସଂସ୍କାରପ୍ରାଣ, ସ୍ୱୟଂ ନନ୍ଦକିଶୋରଙ୍କର ଏକାନ୍ତ ନିଜସ୍ୱ ମଧ୍ୟ । ନନ୍ଦକିଶୋରଙ୍କର ନିଜ ଜୀବନର ଆଦର୍ଶ, ଆକାଂକ୍ଷା ଓ ଅଭୀପ୍ସା ହିଁ ରୂପ ପରିଗ୍ରହ କରିଚି ରାଜେନ୍ଦ୍ର ଚରିତ୍ର ଜରିଆରେ । କନକଲତା ଉପନ୍ୟାସରେ ଶିକ୍ଷିତ ଯୁବକ ରାଜେନ୍ଦ୍ରର ମନର ଭାବ ପ୍ରକାଶ କରିବାକୁ ଯାଇ ଶିକ୍ଷିତ ନନ୍ଦକିଶୋର ନିଜ ମନର ଭାବ ହିଁ ବ୍ୟକ୍ତ କରିବସିଛନ୍ତି :

---

(୧୫) ନନ୍ଦକିଶୋର ଗ୍ରନ୍ଥାବଳୀ - ପୃ. ୧୦୫୫, (୧୬) କନକଲତା : ନ.ଗ୍ର.- ପୃ : ୯୨୯

''ସମାଜରେ ଅଜ୍ଞାନ, ଅଶିକ୍ଷା, ରୋଗ, ଦୁର୍ଭିକ୍ଷ କେତେ ଶତ୍ରୁ କରାଳ ମୁଖ ବ୍ୟାଦାନ କରି ଭାରତ ର ଶୋଣିତ ଶୋଷଣ କରୁଛନ୍ତି । ବିଧବା ବାଳିକା ଓ ଯୁବତୀ ମାନଙ୍କ ଆର୍ତ୍ତନାଦରେ ହିମାଳୟ, ବିନ୍ଧ୍ୟାଚଳ, ପଶ୍ଚିମଘାଟ, ପୂର୍ବଘାଟ, ମାଲ୍ୟଗିରି, ମେଘାସନର ଉଚ୍ଚତମ ଶୃଙ୍ଗମାନ ପ୍ରତିଧ୍ୱନିତ ହେଉଅଛି । ସମାଜରେ ଜାତିଭେଦ, ପୌରୋହିତ୍ୟ ବିବାହପଣ, ବୃଦ୍ଧ ବିବାହ, ଶିଶୁ ବିବାହ, ବାଳିକାର ଚିର ବୈଧବ୍ୟ ପ୍ରଭୃତି ଦୁରନ୍ତ ହେୟ ନରଶୋଣିତ ଶୋଷଣକାରୀ କୁସଂସ୍କାର ମାନର ଘୋର ପ୍ରାଦୁର୍ଭାବ । ମୁଁ କୈଣସି ଗୋଟିଏ କାର୍ଯ୍ୟରେ ଜୀବନ ଅର୍ପଣ କରି ଚିର କୁମାର ବ୍ରତ ଅବଲମ୍ବନ କରିବି । ଅନ୍ତତଃ ଯେ ପର୍ଯ୍ୟନ୍ତ ଗୋଟିଏ ଦଳ ସଂଗଠିତ ନ ହୋଇଛି, ସେ ପର୍ଯ୍ୟନ୍ତ ଅବିବାହିତ ରହିବି ।'' ( ୧୭ )

୧୮୭୦ - ୧୯୨୦ ସାଲ ମଧ୍ୟରେ ନବୋତ୍କଳ ନିର୍ମାଣରେ ବହୁ ଅନୁଷ୍ଠାନର ସକ୍ରିୟ ଭୂମିକା ବାସ୍ତବରେ ଅବିସ୍ମରଣୀୟ । ଓଡ଼ିଆ ଭାଷା, ସାହିତ୍ୟ ଓ ଶିକ୍ଷାର ଗୌରବ ପ୍ରତିଷ୍ଠା ଓ ପ୍ରସାର, ନାରୀ ଶିକ୍ଷାର ପ୍ରଚଳନ, କୁସଂସ୍କାର ଦୂରୀକରଣ ଆଦି ଥିଲା ଏ ସବୁ ଅନୁଷ୍ଠାନ ମାନଙ୍କ ମୂଳ ଅଭିପ୍ରାୟ । ବହୁ ଅନୁଷ୍ଠାନ ସହ ଓଡ଼ିଆ ଛାତ୍ର ଓ ଯୁବ ସଂପ୍ରଦାୟ ମଧ୍ୟ ସକ୍ରିୟ ଭାବେ ସଂପୃକ୍ତ ଥିଲେ । ଏହା ବ୍ୟତୀତ କେତେକ ସ୍ୱତନ୍ତ୍ର ଯୁବ ଅନୁଷ୍ଠାନ ଓ ଛାତ୍ର ସଂଘ ମଧ୍ୟ ରହିଥିଲା । ପ୍ରସଙ୍ଗ କ୍ରମେ କେତୋଟିର ନାମ ଉଲ୍ଲେଖ କରାଯାଇପାରେ -- କଟକ ୟଙ୍ଗ ମେନ୍ସ୍ ଆସୋସିଏସନ୍ ବା କଟକ ବାଳକ ସମାଜ ( ୧୯୮୯ ), କଟକ କଲେଜ୍ ଷ୍ଟୁଡ଼େଣ୍ଟସ୍ ଆସୋସିଏସନ୍ (୧୮୮୨), ପୁରୀ ଷ୍ଟୁଡ଼େଣ୍ଟସ୍ ଆସୋସିଏସନ୍ ( ୧୮୮୨ ), ଓଡ଼ିଶା ଗ୍ରାଜୁଏଟ୍ ଏବଂ ଅଣ୍ଡର୍ ଗ୍ରାଜୁଏଟ୍ ସଭା (୧୮୮୮), କଟକ କଲେଜ କାଉନ୍ସିଲ୍ (୧୮୯୨), ନୟାବଜାର ଷ୍ଟୁଡ଼େଣ୍ଟସ୍ ସୋସିଆଲ୍ କ୍ଲବ (୧୮୯୬), ବାଲେଶ୍ୱର ଜିଲ୍ଲା ସ୍କୁଲ ରିଡ଼ିଂ କ୍ଲବ୍ (୧୮୯୬) ଇତ୍ୟାଦି । (୧୮) କେତେକ ଛାତ୍ର ଅନୁଷ୍ଠାନ ଗଠନମୂଳକ କ୍ରିୟାକଳାପରେ ବାସ୍ତବରେ ସଚେତନ ଓ ତତ୍ପର ଥିଲେ । ଏହାର ସଭ୍ୟଗଣ ଆଲୋଚନା ସଭାରେ ଭାଗ ନେଇ

(୧୭) କନକଲତା : ନନ୍ଦକିଶୋର ଗ୍ରନ୍ଥାବଳୀ - ପୃ. ୮୪୫-୪୬

(୧୮) ଡଃ ନଟବର ସାମନ୍ତରାୟଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ପୃ : ୧୯୧-୯୨

ବା ଭାଷଣ ଦେଇ କେବଳ ସନ୍ତୁଷ୍ଟ ରହୁନଥିଲେ, ଦେଶ ଓ ସମାଜର ଉନ୍ନତି ବିଧାନ କଳ୍ପେ ନିଜର ଅକୁଣ୍ଠ ସାହାଯ୍ୟ ଓ ସହଯୋଗ ପ୍ରଦାନ ପାଇଁ ମଧ ଶପଥ ନେଇଥିଲେ । ଏଠାରେ ପ୍ରବନ୍ଧର ଚର୍ଚ୍ଚିତ ପ୍ରସଙ୍ଗ ଉପରେ ଆଖି ରଖି ଗୋଟିଏ ଛାତ୍ର ସଂଘର ଶପଥ ଦିବସର ବିବରଣୀ ଉଦ୍ଧାର କରାଯାଉଛି :

''ଆନନ୍ଦ ସହିତ ଅବଗତ ହେଲୁଁ ଯେ ଏଠା କଲେଜ ବୋର୍ଡ଼ିଂର କେତେକ ଛାତ୍ର ଗତ ଗୁରୁବାର ପ୍ରତିଜ୍ଞା କରିଅଛନ୍ତି ଯେ ଅନ୍ତତଃ ମଧ ଓଡ଼ିଆ ସମାଜ ଶ୍ରେଣୀଶିକ୍ଷା ଓ ଗୃହକର୍ମ ପରିଚାଳନାର ବ୍ୟାବହାରିକ ଜ୍ଞାନ ଲଭି ନଥିବା ବାଳିକାକୁ ବିବାହ କରିବେ ନାହିଁ ।''(୧୯)

ଯୁବକ ନନ୍ଦକିଶୋର କଲେଜ-ଛାତ୍ରାବସ୍ଥାରୁ ହିଁ ବିଭିନ୍ନ ସାହିତ୍ୟ ସଭା ମାନଙ୍କରେ ସକ୍ରିୟ ଭାଗ ନେଉଥିଲେ । (୨୦) କଟକ ରେଭେନ୍‌ସା କଲେଜରେ ଅଧ୍ୟୟନ କାଳରେ (୧୮୯୭-୯୯) ବ୍ରାହ୍ମଧର୍ମର ଅବଶ୍ୟମ୍ଭାବୀ ପ୍ରଭାବରୁ ଦୂରରେ ରଖିବା ପାଇଁ ଦୂରଦ୍ରଷ୍ଟା ଅଗ୍ରଜ ଦୟାନିଧିଙ୍କ ଚାପ ଫଳରେ ନନ୍ଦକିଶୋରଙ୍କୁ ଅଗତ୍ୟା ବିବାହ କରିବାକୁ ପଡ଼ିଥିଲା । ସେହି ସମୟରେ ବିବାହକୁ ଉପେକ୍ଷା କରିଥିଲେ, ପରବର୍ତ୍ତୀ କାଳରେ ନନ୍ଦକିଶୋର ଆଜୀବନ ଅବିବାହିତ ରହିଥାନ୍ତେ, କି ସଂସ୍କାରପ୍ରବଣ ହୋଇ ବିଧବା ବିବାହ କରିଥାନ୍ତେ, କି ବ୍ରାହ୍ମଧର୍ମ ଗ୍ରହଣକରି ବ୍ରାହ୍ମ ବିବାହ କରିଥାନ୍ତେ, ଆଜି ତାହା ଏକ ଅଭାବିତ ପ୍ରଶ୍ନ । ତେବେ କଲେଜରେ ଅଧ୍ୟୟନ କାଳରେ ପରିସ୍ଥିତି ଚାପରେ ଯୁବକ ନନ୍ଦକିଶୋର କଟକ ଜିଲ୍ଲା ଅନ୍ତର୍ଗତ ଅଖ୍ୟାତ ବାନ୍ତଳାର ପଲ୍ଲୀବାଳା କୋକିଳ ଦେବୀଙ୍କ ପାଣିଗ୍ରହଣ କରିବା ଫଳରେ ନନ୍ଦକିଶୋରଙ୍କ ଜୀବନୀକାର ଶ୍ରୀ ସୂର୍ଯ୍ୟମଣି ଜେନାଙ୍କ ମତରେ, ''ତାଙ୍କ ଜୀବନର ମାର୍ଗ ସ୍ଥିରୀକୃତ ହୋଇ ଯାଇଥିଲା । ଏହି ସମୟଠାରୁ ତାଙ୍କ ଜୀବନର ପ୍ରତ୍ୟେକ କାର୍ଯ୍ୟରେ କୋକିଳ ଦେବୀଙ୍କର ପ୍ରଭାବ ଛତ୍ରେ ଛତ୍ରେ ଅନୁଭୂତ ହୁଏ । କବି Reformed Hindu, ତଥାପି ପୌତ୍ତଳିକ ହିନ୍ଦୁ କୋକିଳ ଦେବୀଙ୍କ ପ୍ରଭାବରୁ ଆପଣାକୁ ମୁକ୍ତ କରିପାରିନଥିଲେ । ଏହିଠାରୁ ବସ୍ତୁତଃ ତାଙ୍କର କବି-ଜୀବନ ଆରମ୍ଭ

(୧୯) 'ଉତ୍କଳ ଦୀପିକା' : ୨୨ ଫେବୃଆରି, ୧୯୧୩

(୨୦) ନ.ଗ୍ର. ପୃ : ୧୯ ଓ ୧୧୧୬ ଦ୍ରଷ୍ଟବ୍ୟ

ହେଲା । ଯେପରିକି ଅନ୍ତର୍ନିହିତ ଭାବୋଚ୍ଛ୍ୱାସ ବିବାହ ଦ୍ୱାରା ସ୍ପନ୍ଦନ ଲାଭକରି କବିତାରେ ରୂପାୟିତ ହେଲା । 'ବସନ୍ତ କୋକିଳ'ର ଅଧିକାଂଶ କବିତା ଏହି ନବବିବାହିତ କଲେଜ ଜୀବନରେ ରଚିତ ହୋଇଥିଲା ।''(୨୧) ଏବଂ ନନ୍ଦକିଶୋରଙ୍କ ଯଥାର୍ଥ କାବ୍ୟିକ ପ୍ରତିଭାର ବିକାଶ-କାଳ ସେଇ ବିବାହିତ ଜୀବନର ପ୍ରଥମ ୪/୫ଟି (୧୮୯୮ - ୧୯୦୨) ବର୍ଷ (୨୨) ଜାଣି ସୁଦ୍ଧା ମନରେ ସନ୍ଦେହ ହୁଏ, ନନ୍ଦକିଶୋରଙ୍କ 'ଓଡ଼ିଆ ଲଳନା' କବିତାରେ ଯେଉଁ ବ୍ୟଙ୍ଗ ଓ କଟାକ୍ଷପାତ କରାଯାଇଛି, ଅଖ୍ୟାତ ବାନ୍ତଲା ପଲ୍ଲୀର ଅଶିକ୍ଷିତା ବାଳା କୋକିଳ ଦେବୀ କ'ଣ ତହିଁରୁ ବହିର୍ଭୂତ ? ବରଂ ଅନେକ ସମୟରେ ମନେହୁଏ, ବ୍ୟଙ୍ଗାତ୍ମକ 'ଓଡ଼ିଆ-ଲଳନା' କବିତାର ସୃଷ୍ଟି ପ୍ରେରଣା ମୂଳରେ କୋକିଳ ଦେବୀ ହିଁ ବିଦ୍ୟମାନ ।

ନାରୀ ଦୁଃଖରେ ସମଦୁଃଖୀ ନନ୍ଦକିଶୋର ଚିର ଲାଞ୍ଛିତା, ଉତ୍ପୀଡ଼ିତା ଉତ୍କଳ-ଲଳନାର ଅନ୍ତଃପ୍ରଦେଶରେ ପ୍ରବେଶ କରି ତାର ଅକୁହା ବ୍ୟଥା ବେଦନାକୁ ପ୍ରାଣେ ପ୍ରାଣେ ଅନୁଭବ କରିଥିଲେ । ଦରଦୀ କବି କଣ୍ଠରେ ତା'ର କରୁଣ ରାଗିଣୀ ପାଠକ ମନରେ ଶିହ୍ରାର ତୋଳେ :

'କେତେ ଦୁଃଖ ସହେ ଉତ୍କଳ ଲଳନା
ସନ୍ଧ୍ୟାବତୀ ଏଣୁ ଜାଳି
କହେ ଭକ୍ତିଭରେ 'ବୃନ୍ଦାବତୀ ମାତା !
ନାରୀ ଜନ୍ମ କର ପାରି ।'(୨୩)

'The woman's cause is man's, they rise or sink together.' ଟେନିସନ୍‌ଙ୍କ କଣ୍ଠସହ କଣ୍ଠ ମିଳାଇ ନାରୀ ଶୁଭଚିନ୍ତକ ନନ୍ଦକିଶୋର ଓଡ଼ିଆ ସମାଜରେ ସେହି ଚିରସତ୍ୟ ଶାଶ୍ୱତ ବାଣୀ ହିଁ ପ୍ରଚାର କରି ଯାଇଅଛନ୍ତି :

(୨୧) ଜୀବନୀ : ନନ୍ଦକିଶୋର ଗ୍ରନ୍ଥାବଳୀ - ପୃ. ୧

(୨୨) ଡଃ ନଟବର ସାମନ୍ତରାୟ : 'ନନ୍ଦକିଶୋର ସାହିତ୍ୟ ସମୀକ୍ଷା' ପୃ : ୨୩

(୨୩) ଉତ୍କଳ ଲଳନା : ନ.ଗ୍ର. ପୃ : ୭୩

'ନାରୀ-ମଙ୍ଗଳରେ ନରର ମଙ୍ଗଳ
ନାରୀ-ଦୁଃଖରେ ଦୁଃଖୀ ନର
ରମଣୀ-ପତନେ ପୁରୁଷ ପତନ
ବିଧାନ ବିଧାତାଙ୍କର ।' (୨୪) □

(୨୪) 'ଉତ୍କଳ ଲଳନା' : ନ.ଗ୍ର. ପୃ-୭୩

# ନନ୍ଦକିଶୋର ବଳ

## ▫ କୈଳାସ ଚନ୍ଦ୍ର ଦାଶ

କବି ନନ୍ଦକିଶୋର ବଳ (୧୮୭୫-୧୯୨୮)ଙ୍କ ସାହିତ୍ୟାନୁରାଗର ପରୀକ୍ଷା ନିରୀକ୍ଷା ପାଇଁ ତାଙ୍କ କାଳ ହିଁ ମୁଖ୍ୟ ଉପାଦାନ । ଊନବିଂଶ ଶତକର ଆଦ୍ୟ ଦଶନ୍ଧିଗୁଡ଼ିକ ଓଡ଼ିଶାର ରାଜନୈତିକ- ସାମାଜିକ-ସାଂସ୍କୃତିକ ଜୀବନର ଏକ ସନ୍ଧିକ୍ଷଣ । ସମାଜ ସଂସ୍କାର ପାଇଁ ଉଗ୍ର ପ୍ରୟାସ ସହିତ ଓଡ଼ିଆ ଜାତୀୟତାବାଦର ବିକାଶ ଏ କାଳର ବିଶେଷ ଲକ୍ଷଣ । ଏ ସବୁର ଅନ୍ତଃକ୍ରିୟା ସହିତ ପ୍ରତିକ୍ରିୟା ମଧ୍ୟ ଶକ୍ତ ଥିଲା । ନନ୍ଦକିଶୋରଙ୍କ ସାହିତ୍ୟ ଏହିକାଳର ପ୍ରତିଧ୍ୱନି ମାତ୍ର । ଏକ ଦିଗରେ ଏ ଜାତିର ଅସଲ ପରିଚୟକୁ ଖୋଲିଦେବା ପାଇଁ, ଅନ୍ୟ ଦିଗରେ ଆପଣାର ପ୍ରକୃତି-ପ୍ରବଣତାର ମୁକ୍ତ ପ୍ରକାଶ ପାଇଁ ସେ କାବ୍ୟ ଜଗତରେ ପ୍ରବେଶ କରିଥିଲେ । ଏବଂ ଖୁବ୍ ଶୀଘ୍ର ଓଡ଼ିଆ ସାହିତ୍ୟ ଜଗତରେ ସୁପରିଚିତ ହୋଇପାରିଥିଲେ ।

ନନ୍ଦକିଶୋରଙ୍କର ଏକ ସଫଳ ସୃଷ୍ଟି ଥିଲା 'ପଲ୍ଲୀଚିତ୍ର' । ଛାତ୍ରାବସ୍ଥାରେ ପଲ୍ଲୀଚିତ୍ର ସମ୍ବନ୍ଧରେ ଯେଉଁ କବିତା ରଚନା କରି କଟକ ଜିଲ୍ଲା ବୋର୍ଡ଼ରୁ ସେ ପଦକ ପୁରସ୍କାର ପାଇଥିଲେ, ସେହି କବତାକୁ ପରିବର୍ଦ୍ଧିତ କରି 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶ କରିଥିଲେ । ୧୯୦୦ ଖ୍ରୀଷ୍ଟାବ୍ଦରେ ସେ ଏହାକୁ ପୁସ୍ତକ ଆକାରରେ ପ୍ରକାଶ କଲେ । ହିତୈଷିଣୀରେ ପ୍ରକାଶ ପରେ ରାଧାନାଥଙ୍କପରି ଉତ୍କଳୀୟ ସାହିତ୍ୟ ରସିକମାନେ କବିଙ୍କର ଶକ୍ତିମତା ଓ ଚିନ୍ତାଶୀଳତାର ପ୍ରଶଂସା କରିଥିଲେ । ସରଳ ଓ ସୁମଧୁର ଭାଷାରେ ପଲ୍ଲୀର ସକଳ ଦୃଶ୍ୟର ମନୋହର ବର୍ଣ୍ଣନା ସେ କରିଥିଲେ । କବି ଏହାକୁ ତାଳଚେରାଧିଶ୍ୱରଙ୍କ ନାମରେ ଉତ୍ସର୍ଗ କରିଥିଲେ । 'ପଲ୍ଲୀଚିତ୍ର' ପାଠ କରି ପୁରୀର କାଶୀନାଥ ମହାପାତ୍ର 'ସମ୍ବଲପୁର ହିତୈଷିଣୀ' (ଏପ୍ରିଲ ୯, ୧୯୦୨)ରେ କବିଙ୍କର ସାହିତ୍ୟାନୁରାଗର ପରିଚୟ ବାଢିଥିଲେ । 'ପଲ୍ଲୀଚିତ୍ର'ର ଆଠଗୋଟି ମଧ୍ୟ[illegible] କବିତା ସରସ ଓ ଜୀବନ୍ତ । ନୈସର୍ଗିକ ଶୋଭାର ଅନୁଭବ ଓ ଚିତ୍ରଣ ସଂପର୍କରେ କବିଙ୍କର ଅସାଧାରଣ କ୍ଷମତା ଥିଲା । କବି ଭାବକୁ ସରଳ ଭାଷାରେ ବ୍ୟକ୍ତ କରିପାରିଥିଲେ । ପଲ୍ଲୀଚିତ୍ର କରିବାକୁ ଯାଇ କବି

ଜାତି ବିଶେଷକୁ ଆକ୍ରମଣ କରିଥିଲେ । ସଂଭବତଃ ନିଜକୁ ଜଣେ ସଂସ୍କାରକ ରୂପରେ ପରିଚିତ କରିବା ଥିଲା ତାଙ୍କର ଅନ୍ୟ ଏକ ଲକ୍ଷ୍ୟ । ଏକ ସ୍ଥାନରେ କବି ସେଥିପାଇଁ ଲେଖିଛନ୍ତି :

କାହିଁ ତୋର ଚତୁର ଆଶ୍ରମ
କାହିଁ ବ୍ରହ୍ମଚର୍ଯ୍ୟ ସେ ନିୟମ
ଦାନ ଆଦି ଷଡକ୍ରିୟା ତେଜି ଚୁଡା ଦହିଖିଆ
ବ୍ରହ୍ମ ଜାନାତି ବ୍ରାହ୍ମଣ ହୁଏ ଯେବେ ସତ୍ୟ
ପ୍ରମାଣ କରିବି ଭାଇ ତୁମ୍ଭକୁ କେମନ୍ତ ?

କାଶୀନାଥ ବାବୁ ଏ ଉକ୍ତିରେ ଅସନ୍ତୁଷ୍ଟ ହୋଇ ଲେଖିଥିଲେ, କବି ଯେବେ ପ୍ରକୃତ ସତ୍ୟପଥରେ ସଂଚରଣ କରି ସମଦୃଷ୍ଟିରେ ସକଳ ଜାତିକୁ ଦର୍ଶନ କରିଥାନ୍ତେ, ବୋଧହୁଏ ଏପରି ଲେଖିବାକୁ ତାହାଙ୍କର ଲେଖନୀକୁ ପରିଚାଳିତ କରିନଥାନ୍ତେ । 'ପଲ୍ଲୀଚିତ୍ର'ଠାରୁ ଅଧିକ ସୁପରିଚିତ ଥିଲା 'ନିର୍ଝରିଣୀ' । କବି ମଧୁସୂଦନ ରାଓ ଏହାର କେତୋଟି କବିତା ପଢ଼ି ଦିନେ ଲେଖିଥିଲେ, 'ଦେଶୀୟ ଭାବମାଧୁରୀ - ସୁସ୍ନିଗ୍ଧ, ସ୍ୱ-ଦେଶୀୟ, ଶତ ବାଲ୍ୟ ସ୍ମୃତି ପବିତ୍ରିତ ଏବଂ ଓଡ଼ିଶାର ଅକୃତ୍ରିମ ଜାନପଦ ଭାବୋଚ୍ଛ୍ୱାସ ସମ୍ବଳିତ ଏପରି ମଧୁମୟ ମନସ୍ପର୍ଶୀ ବିଚିତ୍ର କଳ ସଂଗୀତ ଆଧୁନିକ ଉତ୍କଳୀୟ ସାହିତ୍ୟ କୁଂଜରେ ଇତିପୂର୍ବେ କୂଜିତ ହୋଇନଥିଲା । ସରଳ ଭାଷା, ଭାବ ପ୍ରାଞ୍ଜଳ ଓ ମନୋରମ ।'

ସେତେବେଳର ଏହି ନବ କବି ଖୁବ୍ କମ୍ ସମୟ ମଧ୍ୟରେ ସାରସ୍ୱତ ଧାମରେ ପୁଣ୍ୟ ଗୌରବମୟ ଅମୃତ ଯଶୋମାଲ୍ୟ ଧାରଣ କରି ସୁ-କବିମାନଙ୍କ ସଙ୍ଗେ ଏକାସନରେ ବସି ବିଶେଷ ରୂପେ ଉତ୍କଳ ସାହିତ୍ୟର ମୁଖ ଉଜ୍ଜ୍ୱଳ କରିଥିଲେ ।

କବିଙ୍କର ପ୍ରକୃତି ଅନୁରାଗ ସହିତ ସମାଜ ସଂସ୍କାର ବାସନା ଏବଂ ଜାତୀୟବାଦୀ ଚିନ୍ତା କବିତା ମାନଙ୍କରେ ସଂଚାରିତ ହୋଇଥିଲା । 'ବସନ୍ତ କୋକିଳ' କବିତା ମାଳାରେ 'ଶ୍ରୀକ୍ଷେତ୍ର' ତାଙ୍କର ଉଗ୍ର ସାମାଜ ସଂସ୍କାର ପ୍ରବୃତ୍ତି ସହିତ ଜାତୀୟତାବାଦୀ ମନୋଭାବକୁ ବ୍ୟକ୍ତ କରିଥିଲା । ନନ୍ଦକିଶୋରଙ୍କ କାବ୍ୟ ରଚନା କ୍ରମେ ଓଡ଼ିଶାର ବହୁ ସାହିତ୍ୟ ରସିକମାନଙ୍କ ଦୃଷ୍ଟି ଗୋଚର ହେଲା । ସବୁଠାରୁ ଆଗ୍ରହର କଥା ହେଲା କବିଙ୍କର ଖ୍ୟାତି ପୁରୀ ସ୍କୁଲର ଛାତ୍ର ପଦ୍ମଚରଣ

ପଟ୍ଟନାୟକଙ୍କ ପାଖରେ ପହଞ୍ଚିଗଲା । ପଦ୍ମଚରଣ 'କଟକ ନଗର ଦର୍ଶନ' ନାମକ କବିତା (ଅଗଷ୍ଟ ୨୭, ୧୯୦୨) 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶ କରିଥିଲେ । ସେଥିରେ ସେ ଲେଖିଥିଲେ :

'କବିଗଣ ତୋର କୋଳରେ ରହି କାବ୍ୟ ଲେଖନ୍ତି
ମହାଯାତ୍ରା, ଛାନ୍ଦମାଳ ଓ ପଲ୍ଲୀଚିତ୍ର ରଚନ୍ତି ।
ରାୟ, ରାଓ, ବଳ କବିଏ ଉତ୍କଳର ରତନ
ତୋ କୋଳେ ରହିଣ ଦିଅନ୍ତି ଆହା କାବ୍ୟ କାଂଚନ ।'

ଏପରି ଜନପ୍ରିୟତା ନନ୍ଦକିଶୋରଙ୍କ କିଛି ସାହିତ୍ୟ ସେବକଙ୍କୁ ନିରାନନ୍ଦିତ କରିଥିଲା । ତେଣୁ ସମ୍ବଲପୁର ହିତୈଷିଣୀ ଅକ୍ଟୋବର ୧, ୧୯୦୨ରେ 'ପ୍ରତିବାଦ' ଶୀର୍ଷକ ଆଲୋଚନାରେ କୁହାଗଲା :'' 'ରାୟ, ରାଓ, ବଳ କବିଏ ଉତ୍କଳର ରତନ', ଏଇଠି ପଡ଼ିଲା ବିଷମ ସମସ୍ୟା ।xxx ଲେଖକ ମହାଶୟ ମାହେନ୍ଦ୍ର ମୁହୂର୍ତ୍ତରେ ଲେଖନୀ ଧାରଣ କରିଥିଲେ କି ? ଭାରତୀ ବିହରାରଣ୍ୟ ସୁରଭିର ବସନ୍ତାନକ ତରୁଣ ପରଭୃତ ରାୟ କବିଙ୍କର ଏବଂ ବାକ୍‌ଦେବୀ ପଦପଙ୍କଜରେ ପୂତ ଭାବାନୁପ୍ରାଣିତ ରାଓ କବିଙ୍କର ସୁବିଗଳ ସ୍ତୁତି ଲେଖକ ଲେଖନୀର ସାର୍ଥକତା ସଂପାଦନ କରୁଅଛି । ଆକ୍ଷେପର ବିଷୟ ଏହି ଯେ, ଲେଖକ ଅଦୂରଦର୍ଶୀତାର ବଶବର୍ତ୍ତୀ ହୋଇ ମନୋଜ୍ଞ ଶୁକସାରୀଙ୍କ ମଣ୍ଡଳୀରେ ଦ୍ରୋଣ କାକଟିଏ ବସାଇଦେଲେ । xxx ମହାଯାତ୍ରାର ଦିବ୍ୟଜ୍ୟୋତି ସମ୍ମୁଖରେ ପଲ୍ଲୀଚିତ୍ର ଧୂଆଁ । ଚନ୍ଦ୍ର ସମ୍ମୁଖରେ ଜୁଳୁଜୁଳିଆ ପୋକ । ବଜ୍ରସାର ସମ୍ମୁଖରେ କର୍କରା । xxx ପଲ୍ଲୀଚିତ୍ର ରୂପ କବିତା ମହାଯାତ୍ରାର ଛାୟାସ୍ପର୍ଶ କରିପାରେ କିନା ?''

ଏହି 'ପ୍ରତିବାଦ'ର ଆଲୋଚନା କରି 'ସମ୍ବଲପୁର ହିତୈଷିଣୀ' (୨୯ ଅକ୍ଟୋବର, ୧୯୦୨) ରେ ସାଲେପୁରରୁ ଶ୍ରୀ ନାମକଟା ସିପାହୀ ଲେଖିଥିଲେ : ''ବଳ କବିଙ୍କୁ ରାୟ କବି ଓ ରାଓ କବିଙ୍କ ସହିତ ଏକାସନରେ ଆସୀନ ରଖି ତଥା ପଲ୍ଲୀଚିତ୍ରକୁ ମହାଯାତ୍ରାର ପାର୍ଶ୍ୱବର୍ତ୍ତୀ କରି ପଟ୍ଟନାୟକ ଯେ ନିର୍ଦ୍ଦୋଷ ଏହା କହିପାରିବି ନାହିଁ । xxx ପଲ୍ଲୀଚିତ୍ର, ନିର୍ଝରିଣୀ, ବସନ୍ତ କୋକିଳ ପ୍ରଭୃତି ସୁନ୍ଦର କବିତାମୟୀ ପୁସ୍ତକ ଗୁଡ଼ିକ ପାଠକରି ବଳ କବିଙ୍କୁ ଘୃଣା [illegible] ଦେଖିବା ନିରାଶୟତାର ପରିଚାୟକ ।'' ଏପରି ପ୍ରତିବାଦର ପ୍ରତିବାଦ ମଧ୍ୟ 'ସମ୍ବଲପୁର ହିତୈଷିଣୀ'ର ୧୦ ଡ଼ିସେମ୍ବର, ୧୯୦୨ରେ ପଦ୍ମଚରଣ ନିଜେ ଦେଇଥିଲେ :

"ମହାଯାତ୍ରାର ଦିବ୍ୟଜ୍ୟୋତି ସମ୍ମୁଖରେ ପଲ୍ଲୀଚିତ୍ର ଧୂଆଁ । ଚନ୍ଦ୍ର ସମ୍ମୁଖରେ ଜୁକୁଜୁକିଆ ପୋକ ହେଉ ବା ନ ହେଉ ଲେଖକ ତ ତୁଳନା କରୁନଥିଲା ଯେ ବଜ୍ରସାର ପାଖେ କର୍କରାରଖି ନିନ୍ଦିତ ହେବ ! ମହାଯାତ୍ରା ସହ ପଲ୍ଲୀଚିତ୍ରର ତୁଳନା କରାହୋଇଥିବାର ମହାପାତ୍ରେ କେଉଁ ମୋହିନୀ ଶକ୍ତି ବଳରେ ଜାଣିଲେ କହିବେ କି ?"

ଏ ଆଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ନନ୍ଦକିଶୋର ନବୀନ ଯୁଗର ଏକ ପ୍ରବକ୍ତା ହିସାବରେ ସେତେବେଳେ ପରିଚିତ ହୋଇଯାଇଥିଲେ । ତାଙ୍କୁ ନେଇ ପୁଣି ନବୀନ-ପ୍ରବୀଣ ବିବାଦର ଏକ ଅଧ୍ୟାୟ ଆରମ୍ଭ ହୋଇଥିଲା । ନନ୍ଦକିଶୋର ଅବଶ୍ୟ କବି ହିସାବରେ ନିଜକୁ ବିଜ୍ଞପିତ କରିବାକୁ ଚାହିଁନଥିଲେ କି ସେଇଥିପାଇଁ କବିତା ଲେଖିନଥିଲେ । ସେ ଉପସ୍ଥାପନା କରିଥିଲେ ତାଙ୍କ କାଳର ପ୍ରତିଧ୍ୱନି ମାତ୍ର । ଜଣେ ଶିକ୍ଷାବିତ୍ ହିସାବରେ ସେ ଏକ ଜୀର୍ଣ୍ଣ ସାମାଜିକ ବ୍ୟବସ୍ଥାକୁ ଦେଖିଥିଲେ, ଆଉ କବିତା ମାଧ୍ୟମରେ ତାହାର ପ୍ରତିବାଦ, ସଂସ୍କାର ଓ ପୁନର୍ଗଠନର ଇଚ୍ଛା ପ୍ରକାଶ କରିଥିଲେ । ଶିକ୍ଷାକ୍ଷେତ୍ରରେ ପରିବର୍ତ୍ତନ ପାଇଁ ତାଙ୍କ ଦୀର୍ଘ କର୍ମମୟ ଜୀବନରେ ସେ ଯେଉଁ ଉଦ୍ୟମ କରିଥିଲେ ତାହା ଓଡ଼ିଶା ସାମଜିକ ଇତିହାସର ଏକ ଅଧ୍ୟାୟ ହୋଇରହିବ । ନିଜେ ସାହିତ୍ୟରସିକ ହୋଇ ଅନ୍ୟକୁ ଉତ୍ସାହିତ କରିବା ତାଙ୍କର ଅନ୍ୟ ଏକ ଗୁଣ ଥିଲା । ସେ ଚନ୍ଦ୍ରଶେଖର ନନ୍ଦ ଏବଂ ସମ୍ବଲପୁରର କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କୁ ବହୁ ଉତ୍ସାହ ଦେଇଥିଲେ । ସ୍ୱପ୍ନେଶ୍ୱର ଦାଶ 'ମାସଚିତ୍ର' ନାମକ କାବ୍ୟ ରଚନା କରିଥିଲେ । ଏଥିରେ ୧୨ ମାସର ପ୍ରାକୃତିକ ଘଟଣା ଓ ପର୍ବପର୍ବାଣୀ ଅତି ମନୋହର ଭାବରେ ରାଗରଗିଣୀରେ ଚିତ୍ରିତ ହୋଇଥିଲା । କବି ନନ୍ଦକିଶୋର ୧୯୧୨ରେ ସମ୍ବଲପୁରରେ ଶିକ୍ଷକତା କରୁଥିବା ସମୟରେ ଏହି କାବ୍ୟର ଭୂୟସୀ ପ୍ରଶଂସା କରିଥିଲେ ।

ନନ୍ଦକିଶୋରଙ୍କ କବି ଜୀବନ ମଉଳିବାକୁ ଲାଗିଲା ୧୯୨୫ ବେଳକୁ । ଏହା ଥିଲା ତାଙ୍କ ପାଇଁ ଏକ ପରୀକ୍ଷାର କାଳ । ପୁରୀରେ ସ୍କୁଲ ଇନ୍ସପେକ୍ଟର୍ ଥିବା ସମୟରେ ତାଙ୍କ ଚାରିପାଖରେ ଶତ୍ରୁମାନଙ୍କର ଚକ୍ରାନ୍ତ ଲାଗି ରହିଲା । ସରକାରୀ ବିବରଣୀରୁ ଜଣାଯାଏ ଯେ, ୧୯୨୪ ସେପ୍ଟେମ୍ବର ୨୫ରେ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଜି.ଇ.ଫକ୍ସ ନନ୍ଦକିଶୋରଙ୍କୁ ବାଲେଶ୍ୱର ସ୍କୁଲକୁ ବଦଳି କରିବାକୁ ପ୍ରସ୍ତାବ ଦେଇଥିଲେ । ତାଙ୍କ ବିରୁଦ୍ଧରେ : ଅନୁମତି ନନେଇ

ବହୁଦିନ ଛୁଟି ଗ୍ରହଣ, ବିନା କ୍ଷମତାରେ ସବ୍ ଇନ୍ସପେକ୍ଟରମାନଙ୍କୁ ବଦଳି ଏବଂ ତାଙ୍କ ଉପର ଅଫିସର୍ ନିର୍ଦ୍ଦେଶିତ ବଦଳିକୁ ବିନାକାରଣରେ ଅଟକ ପ୍ରଭୃତି, ଏପରିକି ସମୟେ ସମୟେ ସ୍ୱଳ୍ପ ଲାଞ୍ଚ ଗ୍ରହଣ ପରି ଅଭିଯୋଗ ଉପସ୍ଥାପିତ କଲେ । ମାତ୍ର ଏସବୁ ଅଭିଯୋଗ ପ୍ରମାଣିତ ହୋଇପାରିଲା ନାହିଁ । ତେଣୁ ସମ୍ଭବତଃ ଈର୍ଷାନ୍ୱିତ ହୋଇ ଡ଼ି.ପି.ଆଇ. ତାଙ୍କୁ ବଦଳି କରିଦେଇଥିଲେ । ପୁରୀରୁ ବାଲେଶ୍ୱର ଜିଲ୍ଲାସ୍କୁଲର ହେଡ଼ମାଷ୍ଟର ହିସାବରେ ସେ ୧୯୨୫ ଜାନୁୟାରୀ ୯ ତାରିଖରେ ଆଦେଶ ପାଇଲେ । ସେତେବେଳେ ସେ ଇନ୍ସପେକ୍ଟର୍ ପଦପାଇଁ ଅଯୋଗ୍ୟ ବୋଲି ପ୍ରକାଶ କରି ଡ଼ି.ପି.ଆଇ. ତାଙ୍କୁ ସ୍କୁଲକୁ ବଦଳି କରିଦେଲେ । ଏହା ପରେ ମଧ୍ୟ ସରକାରଙ୍କ କୋପ ଦୃଷ୍ଟି ବଦଳି ନଥିଲା । ଗୋପ ମିଡ଼ିଲ୍ ଭର୍ଣ୍ଣାକୁଲର୍ ସ୍କୁଲର ୬ ଜଣ ପରୀକ୍ଷାର୍ଥୀଙ୍କ କାଗଜପତ୍ର ଏବଂ ଫିସ୍ ୧୯୨୪ ଅକ୍ଟୋବର ୨୮ ତାରିଖ ସୁଦ୍ଧା ହେଡ଼ ପଣ୍ଡିତଙ୍କ ଦ୍ୱାରା ପୁରୀ ପରୀକ୍ଷା କେନ୍ଦ୍ର ସୁପରିଟେଣ୍ଡେଣ୍ଟଙ୍କ ପାଖକୁ ପଠାଇ ଦିଆଯାଇଥିଲେ ମଧ୍ୟ ରାୟ ସାହେବ ନନ୍ଦକିଶୋର ନଭେମ୍ବର ୧୭, ୧୯୨୪ ପର୍ଯ୍ୟନ୍ତ ତାହା ଜଣାଇନଥିଲେ । ତେଣୁ ସେହି ପରୀକ୍ଷାର୍ଥୀ ମାନେ ପରୀକ୍ଷା ଦେଇପାରିଲେ ନାହିଁ । ନଭେମ୍ବର ୧୭, ୧୯୨୪ ଥିଲା ସେମାନଙ୍କ ପରୀକ୍ଷାର ଦିବସ ।

ଏହାର କାରଣ ବଳ ଜଣାଇଥିଲେ ମଧ୍ୟ ତାହା ଯଥେଷ୍ଟ ନୁହେଁ ବୋଲି ଦର୍ଶାଇ ତାହାଙ୍କର 'ଇନକ୍ରିମେଣ୍ଟ' ଚାରିବର୍ଷ ପାଇଁ ବନ୍ଦ କରି ଦିଆଯାଇଥିଲା । ଏପରି ପରିସ୍ଥିତିରେ ନନ୍ଦକିଶୋରଙ୍କ ସାହିତ୍ୟକ ଜୀବନର ଅସ୍ତରାଗ ଦେଖାଦେଇଥିଲା । ସେତେବେଳେ ସେ ବହୁମୂତ୍ର ଏବଂ ଅନ୍ୟାନ୍ୟ ଅନେକ କଠିନ ରୋଗରେ ଯନ୍ତ୍ରଣା ଭୋଗ କରୁଥିଲେ । ଶତାବ୍ଦୀର ଆରମ୍ଭବେଳକୁ ଯେଉଁ ଫୁଲଟି ଫୁଟିଥିଲା ତାହା ମଉଳିବାକୁ ଆରମ୍ଭ କଲା । ୧୯୨୮ ଜୁଲାଇ ୧ ତାରିଖ ଦିନ ୪ ଟା ବେଳେ କଟକରେ ସେ ପରଲୋକ ଗମନ କଲେ । ନନ୍ଦକିଶୋର ସାହିତ୍ୟର ସମୀକ୍ଷା, ତାଙ୍କ କାଳର ଚର୍ଚ୍ଚା ଆମ୍ଭ ସାହିତ୍ୟ ଇତିହାସର ଏକ ବଳିଷ୍ଠ ଅଧ୍ୟାୟ । ସେ ଥିଲେ ନବଯୁଗୀୟ ଓଡ଼ିଶାର ଅଭିନବ ପ୍ରବକ୍ତା । □

# ପଲ୍ଲୀ ପ୍ରକୃତିର କବି ନନ୍ଦକିଶୋର

□ ବସନ୍ତ କୁମାର ପଣ୍ଡା

ପୁରାତନ ପଲ୍ଲୀର ସେ ଦୃଶ୍ୟ ମନୋହର
ଚିତ୍ରି ପାରିବକି ଭାଇ ନବ ଚିତ୍ରକର ।

-- ନନ୍ଦକିଶୋର : 'ପଲ୍ଲୀଚିତ୍ର'

ପଲ୍ଲୀକବି ନନ୍ଦକିଶୋର ବଳ (୧୮୭୫-୧୯୨୮) ଆଧୁନିକ ଉତ୍କଳର ଅନ୍ୟତମ ଶ୍ରେଷ୍ଠ ନବଜାଗରଣକାମୀ କବି । ବିଂଶ ଶତାବ୍ଦୀର ଆରମ୍ଭରୁ ଆଂଚଳିକ ସଂସ୍କୃତିକୁ କେନ୍ଦ୍ରକରି ଯେଉଁ ନବଜାଗରଣ ୟୁରୋପରେ ଦେଖାଦେଇଥିଲା ତାହାର ଅନୁରୂପ ମନୋଭଙ୍ଗୀ ନନ୍ଦକିଶୋରଙ୍କ ପାଖରେ ଦେଖିବାକୁ ମିଳେ । କେଲ୍‌ଟିକ୍ ରିଭାଇଭାଲ୍ ପ୍ରମୁଖ କବି ବର୍ଣ୍ଣସ୍ ଓ ୟେଟ୍‌ସ୍‌ଙ୍କ ପରି ଉତ୍କଳୀୟ ପଲ୍ଲୀ ପ୍ରକୃତି ଓ ଲୋକସଂସ୍କୃତିକୁ ଉପଜୀବ୍ୟ କରି ଏକ ନବଧାରାର କାବ୍ୟସାହିତ୍ୟ ସୃଷ୍ଟିକରିଛନ୍ତି ନନ୍ଦକିଶୋର । ତାଙ୍କର ଇତିହାସ ସଚେତନ କବିଦୃଷ୍ଟି ଆଦର୍ଶ ପ୍ରତିଷ୍ଠାରେ ଥିଲା ଆଗ୍ରହୀ । ଶାସ୍ତ୍ରଜ୍ଞାନ ଓ ଅନୁଭୂତିଠାରୁ ପ୍ରକୃତି ଅଧ୍ୟୟନକୁ ସେ ବେଶୀ ଗୁରୁତ୍ୱ ଦେଉଥିଲେ । ସେ ଲେଖିଛନ୍ତି : ''ଅନୁକରଣ ଓ ଶାସ୍ତ୍ରାଧ୍ୟୟନ ଦ୍ୱାରା ଶିକ୍ଷାହୁଏ ସତ୍ୟ, କିନ୍ତୁ ନିର୍ଜନ ଚିନ୍ତାଦ୍ୱାରା ପ୍ରକୃତିରୂପ ମହାଶାସ୍ତ୍ର ଆଲୋଚନାରୁ ହିଁ ପ୍ରକୃତ ଶିକ୍ଷାହୁଏ ।'' ('କର୍ମ':ନ.ଗ୍ର. ପୃ/୧୦୬୪) ।

ଜୀବନରେ ସେ ପ୍ରକୃତରେ ବହୁଭାବରେ ପ୍ରକୃତିକୁ ଅଧ୍ୟୟନ କରିଛନ୍ତି । ନାଗରିକ ସଭ୍ୟତାର ମୋହରୁ ମୁକ୍ତ କବି ସମାଜ ଭିତରେ ପଲ୍ଲୀପ୍ରତି ଅନୁରାଗ ସୃଷ୍ଟି କରିବା ପାଇଁ କବିତାରେ ଆଙ୍କିଛନ୍ତି ପଲ୍ଲୀ ପ୍ରକୃତିର ସରଳ କମନୀୟତା, ପ୍ରଶାନ୍ତି ଓ ସ୍ୱାଭାବିକ ଜୀବନବୋଧ । କବିଗୁରୁ ରବୀନ୍ଦ୍ରନାଥ ପଲ୍ଲୀକୁ ସହର ଅପେକ୍ଷା ପ୍ରକୃତି ଓ ଜୀବନର ଅଧିକ ନିକଟତର ବିଚାର କରି ଲେଖିଛନ୍ତି : ''ପଲ୍ଲୀ ଠିକ୍ ନାରୀ ସଦୃଶ, ତା'ରି ସଂରକ୍ଷଣରେ ସମସ୍ତ ଜାତିର ଲାଳନ ପାଳନ ଦୋଳା ନିହିତ, ତାହା ସହର ଅପେକ୍ଷା ପ୍ରକୃତିର ଅଧିକ ନିକଟବର୍ତ୍ତୀ ଓ ଜୀବନ ନିର୍ଝର ସହିତ ତାହାର ସଂପର୍କ ନିବିଡ଼ ।'' ସେହି ପଲ୍ଲୀର ସଜୀବ ଦୃଶ୍ୟ, ପ୍ରଭାତ ପ୍ରଦୋଷ, ପଶୁପକ୍ଷୀ, ବୃକ୍ଷଲତା

ଓ ବିଭିନ୍ନ ଋତୁରେ ପଲ୍ଲୀ ପ୍ରକୃତିର ପରିବର୍ତ୍ତନଶୀଳ ରୂପ ଅତି ସ୍ପଷ୍ଟ ଓ ସୁନ୍ଦର ଭାବେ ରୂପଲାଭ କରିଛି ନନ୍ଦକିଶୋର କବିତାରେ ।

ନନ୍ଦକିଶୋରଙ୍କ କବି ଜୀବନ ଆରମ୍ଭ ହୋଇଥିଲା ରାଧାନାଥ କାବ୍ୟ-ରୀତିର ଅନୁସରଣ ଭିତରେ । 'ସୀତା-ବନବାସ', 'ଶର୍ମିଷ୍ଠା' ଓ 'କୃଷ୍ଣ କୁମାରୀ' କାବ୍ୟରଚନା ଏହି ପର୍ଯ୍ୟାୟର ସୃଷ୍ଟି । କିନ୍ତୁ ପରବର୍ତ୍ତୀ କାଳରେ ଏହି ଧାରାର ପରିବର୍ତ୍ତନ କରି ସେ ଫକୀରମୋହନଙ୍କ କାବ୍ୟ-ରୀତିକୁ ଆପଣାର କରିଛନ୍ତି ଓ 'ପଲ୍ଲୀଚିତ୍ର', 'ନିର୍ଝରିଣୀ', 'ବସନ୍ତ କୋକିଳ', 'ତରଙ୍ଗିଣୀ', 'ଚାରୁଚିତ୍ର', 'ନିର୍ମାଲ୍ୟ', 'ପ୍ରଭାତ ସଂଗୀତ', 'ନାନାବାୟା ଗୀତ' ଓ 'କାକ-ବାରତା' ରଚନା କରିଛନ୍ତି । ପଲ୍ଲୀପ୍ରକୃତି ଓ ପଲ୍ଲୀଜୀବନର ଲୌକିକ ଚିତ୍ରଣ ନନ୍ଦକିଶୋରଙ୍କ ଏହି କବିତା ଗୁଡ଼ିକୁ ଅନନ୍ୟ ମୌଳିକତା ଓ ସ୍ୱାତନ୍ତ୍ର୍ୟ ପ୍ରଦାନ କରିଛି । ପଲ୍ଲୀ ସମାଜରେ ପ୍ରଚଳିତ ଲୋକ-ଗୀତିର ରାଗ-ରାଗିଣୀ ଓ ରୂପକଳ୍ପର ପ୍ରୟୋଗରେ କବିତାଗୁଡ଼ିକ ମାର୍ମିକ ଓ ହୃଦୟସ୍ପର୍ଶୀ ହୋଇ ପାରିଛି । ଶିଶୁର ଦରୋଟି ଭାଷାରେ ଓ ପଲ୍ଲୀରମଣୀର ନିତିଦିନିଆ କଥାରେ ସେ କବିତା ରଚିତ ହୋଇ ଓଡ଼ିଆ ପାଠକର ସ୍ମୃତିରେ ସାଇତା ହୋଇ ରହିଛି ।

ନନ୍ଦକିଶୋରଙ୍କ ପ୍ରାଥମିକ କାବ୍ୟଗୁଡ଼ିକରେ ସୌନ୍ଦର୍ଯ୍ୟଚିତ୍ରଣ ଅପେକ୍ଷା ନୀତି-କଥନ ବେଶୀ । ତାଙ୍କ ସୌନ୍ଦର୍ଯ୍ୟଚେତନା ପଲ୍ଲୀ ଆଧାରିତ । କିନ୍ତୁ 'ଶର୍ମିଷ୍ଠା', 'କୃଷ୍ଣ-କୁମାରୀ' ଓ 'ସୀତା ବନବାସ'ରେ କବିପ୍ରତିଭାର ଏହି ଦିଗଟି ବିକାଶ ଲାଭକରିପାରି ନାହିଁ । 'ଶର୍ମିଷ୍ଠା' କାବ୍ୟର ପଞ୍ଚମ ଛାନ୍ଦର ବର୍ଷାଚିତ୍ର ବ୍ୟତୀତ ଏହି କାବ୍ୟଗୁଡ଼ିକରେ ଏହିଭାବ ଦୁର୍ଲ୍ଲଭ । ତେଣୁ ଆଲୋଚକଙ୍କ ଭାଷାରେ : ''ଶର୍ମିଷ୍ଠା ଓ କୃଷ୍ଣକୁମାରୀ ଭଳି ରଚନାରେ କବିଙ୍କର କୌଣସି ନିଜତ୍ୱ ଫୁଟିନାହିଁ । ଆତ୍ମପ୍ରତ୍ୟୟ କାବ୍ୟରଚନାର ମୂଳମନ୍ତ୍ର । ଉକ୍ତ ରଚନା ଦ୍ୱୟରେ ତାର ଅଭାବ ଦେଖାଯାଏ । ଏଠାରେ ସେ ହୋଇଛନ୍ତି ରାଧାନାଥ ସୌରଚକ୍ରର ଗୋଟିଏ ସାଧାରଣ ଗ୍ରହ । ତାର ଅସ୍ତିତ୍ୱ ଅଛି, ଆଲୋକ ନାହିଁ ।'' (ଶ୍ରୀମନ୍ତ : ଡଃ କୁଂଜବିହାରୀ ଦାଶ)

'ପଲ୍ଲୀଚିତ୍ର' ଓ 'ନିର୍ଝରିଣୀ' ପ୍ରକାଶକରି ନନ୍ଦକିଶୋର ପ୍ରକୃତରେ ପଲ୍ଲୀକବି ଭାବେ ସୁପରିଚିତ ହୋଇଥିଲେ । ଉତ୍କଳୀୟ ପଲ୍ଲୀର ସୁକାନ୍ତ କୋମଳ ଆତ୍ମା ଏଇ ଦୁଇ କାବ୍ୟରେ ଫିଟି ପଡ଼ିଥିଲା । ଭକ୍ତକବି ମଧୁସୂଦନଙ୍କ ଭାଷାରେ : ''ଓଡ଼ିଶାର ଅକୃତ୍ରିମ ଜାନପଦ ଭାବୋଚ୍ଛ୍ୱାସ

ସମନ୍ୱିତ ଏଭଳି ମଧୁମୟ ମର୍ମସ୍ପର୍ଶୀ ବିଚିତ୍ର କଳ ସଂଗୀତ ଆଧୁନିକ ଉତ୍କଳ ସାହିତ୍ୟ କୁଂଜରେ ଇତିପୂର୍ବେ କୁଜିତ ହୋଇନଥିଲା ।''

('ନିର୍ଝରିଣୀ'ରେ ମନ୍ତବ୍ୟ : ନ.ଗ୍ର. ପୃ-୧୦୦)

'ପଲ୍ଲୀଚିତ୍ର'କୁ କବି ତିନିଭାଗରେ ବିଭକ୍ତ କରି ପ୍ରଥମଭାଗରେ ପଲ୍ଲୀର ବିଦ୍ୟାଳୟ, ହାଟ, ଶ୍ମଶାନ, ଦେବାଳୟ ଆଦି ଅନୁଷ୍ଠାନ ଓ ସ୍ଥାନମାନଙ୍କର ଚିତ୍ର ; ଦ୍ୱିତୀୟ ଭାଗରେ ବିଭିନ୍ନ ଋତୁରେ ପଲ୍ଲୀର ପରିବର୍ତ୍ତନଶୀଳ ପ୍ରକୃତି ଓ ଶେଷ ଭାଗରେ ପଲ୍ଲୀର ଜନସମାଜର ଚିତ୍ର ପ୍ରଦାନ କରିଛନ୍ତି । ଛାତ୍ର ଜୀବନରେ ଉତ୍କଳୀୟ ପଲ୍ଲୀଚିତ୍ରକୁ ଆଧାର କରି ଲେଖିଥିବା ରଚନା ପୁରସ୍କୃତ ହେବାପରେ କବି ଭକ୍ତକବି ମଧୁସୂଦନଙ୍କ ଦ୍ୱାରା ଉତ୍ସାହିତ ହୋଇ ସରଳଭାଷାରେ ବିସ୍ତାରିତ ପଦ୍ୟାକାରେ ରଚନା କରିଥିବା କଥା 'ପଲ୍ଲୀଚିତ୍ର'ର ଭୂମିକାରେ ସୂଚନା ଦେଇଛନ୍ତି ।

ସମୟର ପରିବର୍ତ୍ତନ ସଙ୍ଗେ ତୁଳନାତ୍ମକ ଭାବେ ନଗର ଓ ପଲ୍ଲୀର ବୈଶିଷ୍ଟ୍ୟକୁ କବିତାରେ ଚିତ୍ରଣକରି କବି ନଗରରେ କିପରି ସଭ୍ୟତାର ବିକାଶ ଓ ବିଳୟ ଘଟେ କିନ୍ତୁ ପଲ୍ଲୀକୋଳରେ କିପରି ସଭ୍ୟତାର ଉନ୍ମେଷ ହୋଇ ଚିରପ୍ରବହମାନ ସ୍ରୋତ ବହିଚାଲିଥାଏ ତାହାର ସୂଚନା ଦେଇଛନ୍ତି । କବିଙ୍କର ବାଲ୍ୟସ୍ମୃତିରେ ଚିର ପବିତ୍ରିତ ପଲ୍ଲୀକୁ ଫେରିଯିବା ପାଇଁ ଆହ୍ୱାନଦେଇ କବି ଲେଖିଛନ୍ତି :

'ଛାଡ଼ିବନ୍ଧୁ ନଗର ଚହଳ
ଯିବାଚାଲ ଯେଉଁସ୍ଥାନେ ଗୋପାଳ ବାଳକ ମାନେ
ଆନନ୍ଦେ କାଟନ୍ତି ଦିନ ସୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶ ସର୍ବଦା ଉଜ୍ଜ୍ୱଳ ।'

ମନକୁ ସର୍ବଦା ନିର୍ମଳ ରଖୁଥିବା ଗୋପାଳ କିଶୋରମାନେ କେବଳ ନୁହନ୍ତି, ସରଳା କୁମାରୀ ମାନେ ମଧ କିପରି ବାଲୁକା ମନ୍ଦିର କରି ଶଙ୍କରଙ୍କୁ ପୂଜି ଆପଣାମନର ଅଭିଳାଷକୁ କଳ୍ପନାରେ ସାକାର କରନ୍ତି, କବିଙ୍କୁ ସେହିସ୍ମୃତି ଅଧୀର କରିଛି :

'ନଦୀତୀରେ ସରୋବର ତୀରେ
ସରଳା କୁମାରୀ ଚୟ ତୋଳିନୀଳ କୁବଳୟ

ପୂଜନ୍ତି ଦେବଶଙ୍କର ବାଲୁକାମନ୍ଦିରେ

ଜଳାର୍ଦ୍ର କୁନ୍ତଳ ଧୀରେ କମ୍ପଇ ସମୀରେ ।'

ପଲ୍ଲୀର ସ୍ମୃତି କବିଙ୍କର ପ୍ରାଣର ଦୋସର, କୈଶୋରର କ୍ରୀଡ଼ା ସଙ୍ଗୀ, ଯୌବନର ପ୍ରିୟା ଓ ବାର୍ଦ୍ଧକ୍ୟର ବାରାଣସୀ ।

'ତେଣୁ ବନ୍ଧୁ ବାଲ୍ୟ　　　　ପଲ୍ଲୀ ଚିତ୍ରପୁଣି

ଆଙ୍କିଲି ତୁଳିକା ଧରି ।

ବାର୍ଦ୍ଧକ୍ୟରେ ବନ୍ଧୁ　　　　ମରଣେ ସ୍ମାରକ

ହେବ ଏ ତୁମ୍ଭ ମୋହରି ।'

ଏହି ପ୍ରିୟତମ ପଲ୍ଲୀର ବିଭିନ୍ନ ଦୃଶ୍ୟ କବିଙ୍କ ଲେଖନୀରେ ଅପୂର୍ବ ରୂପଲାଭ କରିଛି । କେଉଁଠି ପଲ୍ଲୀ ପୁଷ୍କରିଣୀରେ ହଂସ ଓ ବକ ପଂକ୍ତିର ଶୋଭା, ଅନ୍ୟକେଉଁଠି ଗ୍ରାମସୀମାରେ ବହି ଚାଲିଥିବା ନଦୀ, ପୁଣି କେଉଁଠି ବର୍ଣ୍ଣାଢ୍ୟ ଗୋଧୂଳିରେ ପଲ୍ଲୀର କୁଂକୁମାୟିତ ଚିତ୍ରପଟ୍ଟର ବର୍ଣ୍ଣନା ମନୋମୁଗ୍ଧକର ।

'ସରସୀର ବିପରୀତ ତୀରେ

ପ୍ରତିଛାୟା ପକାଇଣ ନୀରେ ।

ବସି ହଂସ ବକରାଜି　　　　ପନ୍ତି ପନ୍ତି ଥାନ୍ତି ସାଜି

କୂଳେ ହିଲ୍ଲୋଳିତ-ଜଳ-ମୃଦୁଳ ଲହରୀ

ଦେଖି ଚମକି ଉଠନ୍ତି ବକେ ଡ଼ରି ଡ଼ରି ।

x　x　x　x　x

ଗ୍ରାମସୀମା ଦେଇ ବହେ ନିର୍ଜନ ସରିତ,

ନଦୀ ବକ୍ଷେ ଭାସିଯାଏ ବିଦେଶୀ ବୋଇତ ।

x　x　x　x　x

ପଲ୍ଲୀ ଲଲାଟରେ ଗୋଧୂଳି ତାରକା

ପାଉଥାଏ କେଡ଼େ ଶୋଭା

କଳ୍ପନା ପଟରେ ସେ ଅତୀତ ଚିତ୍ର

ଚିର ପ୍ରାଣ-ମନଲୋଭା ।'

ପଲ୍ଲୀର ଋତୁଚିତ୍ର କବିଙ୍କର ଶୈଶବ ସ୍ମୃତି ବିଜଡ଼ିତ । କଳ୍ପନାର କଳ୍ପନେତ୍ରରେ ସ୍ମୃତିକୁ ରୋମନ୍ଥନକରି କବି ଋତୁ ଆବର୍ତ୍ତନ ଭିତରେ ପଲ୍ଲୀର ପ୍ରକୃତିକୁ ଦେଖିଛନ୍ତି । ବର୍ଷାର ରୂପଦେବାପାଇଁ ରଚନା କରିଛନ୍ତି :

'ନୀଳ ନଭେ ଦେଖି ନବ ନୀରଦ

ଉଡ଼େ ବର୍ହି ଛାଡ଼େ ଷଡଜ ଶବ୍ଦ ।

ଉତ୍-ପୁଚ୍ଛ-କଳାପ ଆନନ୍ଦ ସ୍ୱନ

ଶୁଣିଣ ମୟୂରୀ ହୁଏ ଉଛନ୍ନ ।

ଗହନ ଅରଣ୍ୟ ପ୍ରକୃତି ଶୋଭା

ସଂସାର ବିରାଗି ନୟନ ଲୋଭା ।'

ପଲ୍ଲୀର ଧୂଳିଧୂସରିତ ପଥ, ଶ୍ୟାମଳ କ୍ଷେତ, ସୁନ୍ଦର ସକାଳ ଓ ସଂଧ୍ୟା : ସବୁ ଦୃଶ୍ୟକୁ କବି ଅତି ଅନ୍ତରଙ୍ଗ ଭାବେ ଲିପିବଦ୍ଧ କରିଛନ୍ତି । ସର୍ବତ୍ର କର୍ମମୁଖର କୃଷକ,କ୍ରୀଡ଼ାରତ ଶିଶୁ, ନାଉରିଆ, ଶଗଡ଼ିଆଙ୍କ କଳରବରେ ମୁଖରିତ ହୋଇଉଠିଛି 'ପଲ୍ଲୀଚିତ୍ର'ର କବିତାରାଜି । ଅତି ସାଧାରଣ ଭାବ ଓ ରୂପ କବିଙ୍କ ଦୃଷ୍ଟିରେ ହୋଇଉଠିଛି ଚିରସୁନ୍ଦର ଓ କବିତାରେ ଲାବଣ୍ୟମୟ ଶବ୍ଦଚିତ୍ର ମଧ୍ୟରେ ଫୁଟିଉଠିଛି । ନଗର ଓ ଯନ୍ତ୍ର ସଭ୍ୟତାର ପ୍ରେତାୟିତ ଆକ୍ରମଣ କିପରି ପଲ୍ଲୀର ପ୍ରକୃତି ଓ ସହଜ ଜୀବନଯାତ୍ରାକୁ ବିକଳାଙ୍ଗ କରିପକାଉଛି ତାହା କବିଙ୍କୁ ବ୍ୟଥିତ କରିଛି । ଅନେକତ୍ର ଇଂରାଜୀ କବି ଗୋଲ୍ଡ୍ ସ୍ମିଥ୍‌ଙ୍କ 'ଡ଼େଜର୍ ଟେଡ୍ ଭିଲେଜ୍'ର ଅନୁଭୂତି ନନ୍ଦକିଶୋରଙ୍କ ଚେତନାକୁ ମଧ୍ୟ ଆକ୍ରାନ୍ତ ଓ ବିଷର୍ଣ୍ଣ କରିପକାଇଛି । ବାସି ଢନ୍ଦ୍ରଫୁଲ ପରି ବା ଅସ୍ତମିତ ସୂର୍ଯ୍ୟ ପରି ପଲ୍ଲୀର ପ୍ରାକୃତିକ ରୂପ କିପରି ମଉଳି ପଡୁଛି, ତାହା କବି ସୁନ୍ଦର ଭାବେ ପ୍ରକାଶ କରିଛନ୍ତି ।

ରବୀନ୍ଦ୍ରନାଥ ଯେପରିଥିଲେ ଚିର ଶ୍ରାବଣର କବି, ବର୍ଷା ମଙ୍ଗଳର କବି ...ନନ୍ଦକିଶୋର ସେହିପରି ବର୍ଷାର କବି । 'ନିର୍ଝରିଣୀ'ର ଅନ୍ତର୍ଭୁକ୍ତ 'ନବବର୍ଷା ଭାବନା','ଅଦିନ ମେଘ', 'ବର୍ଷାମଙ୍ଗଳ' ଆଦି କବିତାରେ କବି ପ୍ରକୃତିର ଧାରାପାତକୁ ଶତସହସ୍ର ଛନ୍ଦରେ ଛନ୍ଦାୟିତ କରି

ଏଭଳି ଅନୁପମ ସ୍ୱର ମାଧୁରୀ ସୃଷ୍ଟି କରିଛନ୍ତି ଯାହା ପାଠକଲେ ଗ୍ରୀଷ୍ମ ମଧ୍ୟାହ୍ନରେ ମଧ୍ୟ ଅଦିନ ଆସନ୍ନ ବର୍ଷାର ଭ୍ରମ ସୃଷ୍ଟି କରେ । କଳ୍ପନାର ସ୍ତରେ ସ୍ତରେ ଶୈଶବର ସ୍ମୃତିକୁ ଉନ୍ମୋଚନ କରି କବି ଶିଶୁର ଦରୋଟି ଭାଷାରେ ଯେଉଁ ପଦଟିକୁ ବାରମ୍ବାର ଦୋହରାଇଛନ୍ତି, ତାହାଭିତରେ ତାଙ୍କର ସରଳ ଶିଶୁପ୍ରାଣର ଅକୁହା ଅପାସୋରା କାହାଣୀ ଅନୁରଣିତ ହୋଇଛି । ଏହି ପ୍ରସଙ୍ଗ ଆଲୋଚନାକରି ସମାଲୋଚକ ଲେଖିଛନ୍ତି : " ମେଘାଛନ୍ନ ଅସ୍ତୋନ୍ମୁଖୀ ସୂର୍ଯ୍ୟର ଚିତ୍ର ଆମେ ଯେ ନ ଦେଖିଛୁ ତାହାନୁହେଁ, କାବ୍ୟରେ ତାହା ପଢ଼ିଅଛୁ ମଧ୍ୟ । କିନ୍ତୁ ପଲ୍ଲୀବଧୂର ଅଣ୍ଟାରେ ଗରା, ନାଥ ହାତ କେନ୍ଦରାର କୁଉଁ କୁଉଁ ଶବ୍ଦ, ନୂଆ ବୋହୂଟିର ମିଟି ମିଟି ଆଖି ଓ ତାର ଜାଳେଣି ସଜା, ବାଡ଼ି ଉହାଡ଼ରେ କୁଆମଇତା ତୋଳା, କୁମ୍ଭାଟୁଆର ହୁଉଁ ହୁଉଁ ଶବ୍ଦ, ଝିପ୍ ଝିପ୍ ବର୍ଷାର ଦୁତ୍ ଦୁତ୍ ଗତି : ଏସବୁ ଜୀବନର ନିତ୍ୟ ପରିଚିତ ଦୃଶ୍ୟ ଓ ଶବ୍ଦ ହେଲେହେଁ ଆମେ ଏସବୁ ଦେଖି ଦେଖିନଥିଲୁ । ଗୋଟିଏ ଗୋଟିଏ ଚିତ୍ର କି ମୁଗ୍ଧକର ଭାବରେ ଏଠାରେ ପ୍ରକାଶିତ ନ ହୋଇଛି ? ଗୋଟିଏ ପରେ ଗୋଟିଏ ଚିତ୍ର ଏକ ସଂହତ ସୁଷମା ଭିତରେ ଅତି ସଂକ୍ଷେପରେ ନିର୍ଝରର ଝର୍ଝର ନାଦ କଳ-କଲ୍ଲୋଳ ପରି କବି ପ୍ରାଣରୁ କିପରି ସ୍ୱତଃ ପରିସ୍ଫୁରିତ ହୋଇଛି , ତାହା ପ୍ରଧାନତଃ ଏଠାରେ ଲକ୍ଷ୍ୟକରିବାର କଥା ।"

(ନଟବର ସାମନ୍ତରାୟ : 'ସମୀକ୍ଷା ଓ ସଂଗ୍ରହ' ପୃ. ୨୧୭)

'ନବବର୍ଷା ଭାବନା' କବିତାଟି ଗୀତି କବିତା ହେଲେମଧ୍ୟ ଏଥିରେ ଏକ ମହାକାବ୍ୟିକ ଆବେଦନ ଓ ମହନୀୟତା ଦେଖିବାକୁ ମିଳେ । ନିଜର ଅନୁଭୂତି ରସରେ ରଂଜିତ କେବଳ ବିକ୍ଷିପ୍ତ ଭାବ ନୁହେଁ, ବିସ୍ତୃତ ସ୍ଥାନ ଓ କାଳରେ ବିଧୃତ ବିଚିତ୍ର ଦୃଶ୍ୟରାଜି ଏଥିରେ ଅଙ୍କିତ ହୋଇଛି । କବିଙ୍କ ଅନ୍ତରର ନିଗୂଢ଼ କାରୁଣ୍ୟ, ବର୍ଷାରେ ଇନ୍ଦ୍ରଧନୁର ବର୍ଣ୍ଣଶୋଭା, ନବକିଶଳୟର ସଜୀବତାକୁ ଭେଦକରି ବିରହୀର ହୃଦୟ ଓ ବନ୍ୟାର୍ତ୍ତର ଉଦ୍‌ବେଗକୁ ଉପଲବ୍ଧି କରିଛି ଓ କବିତାରେ ତାହାକୁ ରୂପ ଦେଇଛି ।

ଏଥିରେ ସନ୍ନିହିତ 'ଉପବନଭାବନା', 'ନିଶୀଥଶୋଭା', 'ନିର୍ଝରିଣୀ' ଓ 'ଡ଼ାଆଣିଆଖରା' ପ୍ରଭୃତି କବିତାରେ ପ୍ରକୃତିର ରହସ୍ୟପୂର୍ଣ୍ଣ ଚିତ୍ର ପ୍ରତିଭାତ । ଏସବୁ ଯେତିକି ଚିତ୍ରାତ୍ମକ ବା ଫଟୋ-ଗ୍ରାଫିକ୍ ସେତିକି ତାତ୍ପର୍ଯ୍ୟପୂର୍ଣ୍ଣ ।

'ତାଆଣିଆ ଖରା ପଡିଛି ବେଳ ଯାଉଛି ବୁଡି
ଅସ୍ତାଚଳ-ଶିଖେ ତପନ ଯାଉଛନ୍ତି ବାହୁଡି ।
ବିଚିତ୍ର ବର୍ଣ୍ଣର ବୋଇତ ପ୍ରାୟେ ଶୋଭା ପ୍ରକାଶି
ବାରୁଣୀ ଗଗନ ବଉଦ କେତେ ଯାଉଛି ଭାସି ।'

ମାର୍କିନ୍ କବି ଏଡ୍‌ଗାର୍ ଏଲେନ୍‌ପୋ'ଙ୍କ ରାଭେନ୍ ପରି ନନ୍ଦକିଶୋରଙ୍କ 'କାକବାରତା' ଏକ ଐତିହାସିକ ସୃଷ୍ଟି । ଏଥିରେ ଡାମରା କାଉ ମୁହଁରେ କବି ଜୀବନର ଏକ ସହଜ ଅଥଚ ଧ୍ରୁବସତ୍ୟ ଶୁଣାଇଛନ୍ତି । ଅନୁମାନରେ ଖଣ୍ଡିତ ନହୋଇ ଏ ସତ୍ୟ ଅନୁଭବରେ ସଂପୂର୍ଣ୍ଣ ଓ ସୁନ୍ଦର ହୋଇଛି । ନିସର୍ଗର ଚିତ୍ର ନଥିଲେ ମଧ୍ୟ 'କାକବାରତା'ର ପ୍ରକୃତିର ପୃଷ୍ଠଭୂମିରେ ରଚିତ ଏକ ଅନୁପମ ସୃଷ୍ଟି ।

'ଜନ୍ମଭୂମି', 'ଚାରୁଚିତ୍ର', 'ପ୍ରଭାତ ସଂଗୀତ' ଓ 'ସଂଧ୍ୟା ସଂଗୀତ'ରେ ନନ୍ଦକିଶୋରଙ୍କର ପଲ୍ଲୀ ପ୍ରକୃତିର ରୂପଶୋଭା ପ୍ରାଣତା ଅନେକତ୍ର ପ୍ରକାଶିତ । 'ଜନ୍ମଭୂମି'ରେ ଜତୀୟତାର ଆବରଣ ତଳେ ପ୍ରକୃତି ବର୍ଣ୍ଣନା ଲୁକ୍‌କାୟିତ । 'ଚାରୁଚିତ୍ର' ସଂକଳନରେ 'ପ୍ରଭାତ', 'ସଂଧ୍ୟା', 'ମଧ୍ୟାହ୍ନ', 'ନିଶୀଥ', 'ଅକାଶ' ଓ 'ପୁଷ୍ପ' ଆଦି କବିତାରେ ପ୍ରକୃତିର ଚିତ୍ର ଦୃଷ୍ଟି ଗୋଚର ହୁଏ । କିନ୍ତୁ ତାହା ଅତି ସାଧାରଣ ଓ ବୈଚିତ୍ର୍ୟ ବିରହିତ । 'ପ୍ରଭାତ ସଂଗୀତ'ରେ ଶୈଶବର ସ୍ମୃତି ଓ 'ସଂଧ୍ୟା ସଂଗୀତ'ରେ ପ୍ରବୀଣ ଭାବନାର ବିକାଶ ପରିଲକ୍ଷିତ ହୁଏ । ଦିବସର ଦୁଇ ସୀମାନ୍ତ ପ୍ରଭାତ ଓ ସଂଧ୍ୟା : ଜୀବନର ଦୁଇକୂଳ ଶୈଶବ ଓ ବାର୍ଦ୍ଧକ୍ୟର ପ୍ରତୀକ । ପ୍ରକୃତିର ରୂପକାର ପଲ୍ଲୀକବି ବେଳେବେଳେ ଜୀବନର ଦାର୍ଶନିକରେ ରୂପାନ୍ତରିତ ହୋଇଛନ୍ତି ।

'ନାନାବାୟାଗୀତ' ନନ୍ଦକିଶୋରଙ୍କର ଅନ୍ୟଏକ ଅନନ୍ୟ ସୃଷ୍ଟିପ୍ରାଣତାର ସ୍ୱାକ୍ଷର ବହନ କରିଛି । ପରଂପରାନୁଗାମୀ କବି ଶିଶୁଙ୍କ ମନୋରଂଜନ ପାଇଁ ଏଇ ଯେଉଁ ଗୀତ ରଚନା କରିଯାଇଛନ୍ତି ତାହା ଓଡ଼ିଆ ସାହିତ୍ୟରେ ଏକାନ୍ତ ଦୁର୍ଲ୍ଲଭ ଓ ଅଭିନବ । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ : ''ନନ୍ଦକିଶୋରଙ୍କ ପ୍ରାଣର ଆଉ ଗୋଟିଏ ନୂତନ ସ୍ଫୂର୍ତ୍ତି ହେଉଛି ତାଙ୍କର ନାନାବାୟାଗୀତ । ଖାଲି ପୁରପଲ୍ଲୀ କାହିଁକି ଓଡ଼ିଶାର ବନପ୍ରାନ୍ତର ମଧ୍ୟ ଏ ଗୀତରେ ପୂର୍ଣ୍ଣ । ଏ

ସଂଗୀତମାନ ପ୍ରାଣର ଆଦି ଉପାଦାନ । ଏହା ସର୍ବତ୍ର ଅଛି ।  ମାତ୍ର ଖୋଜିଲେ ସହଜରେ ମିଳେନାହିଁ । ଏହା ସ୍ୱଭାବ ସୁନ୍ଦର । ଇନ୍ଦ୍ରଧନୁର ବର୍ଣ୍ଣବିଭବ ତଥା ଦୂରବନାନ୍ତର ଅନାସକ୍ତ ଧୂମ୍ର ନୀଳିମା ଭଳି କାବ୍ୟକଳାର ସ୍ୱାଭାବିକ ଉପାଦାନ ସଙ୍ଗେ ଏହାକୁ କଥଂଚିତ୍ ତୁଳନା କରାଯାଇପାରେ ।''

(ନନ୍ଦକିଶୋର ଗ୍ରନ୍ଥାବଳୀ-ମୁଖବନ୍ଧ)

ଏହିପରି ଭାବେ ନନ୍ଦକିଶୋରଙ୍କ କବିତାର ଛତ୍ରେ ଛତ୍ରେ ଉତ୍କଳୀୟ ପଲ୍ଲୀ ପ୍ରକୃତିର ରୂପଶୋଭା ବହୁ ବର୍ଣ୍ଣବିନ୍ୟାସ ଘେନି ପ୍ରତିଭାତ । ବହୁ ରୂପକ ଓ ଉପମାର ବିନିଯୋଗରେ ତାହା ବ୍ୟଂଜନାମୟ । କିନ୍ତୁ ପ୍ରତୀକାତ୍ମକ ନହୋଇ ବର୍ଣ୍ଣନାତ୍ମକ । ତାଙ୍କ କବିତାର ଆତ୍ମା ଅମର । ତାହାର ଶବ୍ଦରେ ସଂଗୀତର ଅବିନଶ୍ୱର ଧ୍ୱନି ଶୁଣାଯାଏ । ସଂଧ୍ୟା ଦୀପାଲୋକରେ ଆଭାସିତ କଲ୍ୟାଣୀ ପଲ୍ଲୀବଧୂର ମୁଖଶ୍ରୀ ପରି ତାହାର ସହଜ ଶବ୍ଦସବୁ ଅପରୂପ ଓ ଅମଳିନ । ପାଠକର ପିପାସୁ ନୟନରେ ଏହା ଆଶାର ଆଲୋକ ଖେଳାଇଦିଏ । ତାଙ୍କ କବିତା ତେଣୁ ସମାଲୋଚକଙ୍କ ଭାଷାରେ : 'ମାନବୀୟ ରସରେ ଗଭୀର, ଶିଳ୍ପ ବିନ୍ୟାସରେ ଅନୁପମ, ଜୀବନ୍ତ ଓ ଅବିସ୍ମରଣୀୟ ।' ('ଆଧୁନିକ ଓଡ଼ିଆ କାବ୍ୟଧାରା': ନବଜାଗରଣ ଯୁଗ : ଡଃ ନରେନ୍ଦ୍ର ନାଥ ମିଶ୍ର) । □

# 'ନିର୍ଝରିଣୀ'ରେ ଜୀବନାଲେଖ୍ୟ

## ▫ ବିଜୟ କୁମାର ମହାନ୍ତି

କବି ନନ୍ଦକିଶୋର ବଳ ଆଧୁନିକ ଓଡ଼ିଆ ଗୀତି କବିତାର ଜଣେ ସଫଳ ସ୍ରଷ୍ଟା ଭାବେ ସ୍ୱୀକୃତ । ପଲ୍ଲୀ ପ୍ରାଣତାର ଅପୂର୍ବ ଆଲେଖ୍ୟ ବହନ କରି ତାଙ୍କ କବିତା ଗୁଡ଼ିକ ମଧୁର ଏବଂ ପ୍ରାଣସ୍ପର୍ଶୀ । ୧୯୦୦ ମସିହାରେ ଆତ୍ମପ୍ରକାଶ କରିଥିବା ତାଙ୍କର 'ନିର୍ଝରିଣୀ' କବିତା ଗୁଚ୍ଛ ପଲ୍ଲୀଚେତନାର ଏକ ସାର୍ଥକ ରୂପଚିତ୍ର । କବି ଜୀବନର କୈଶୋରୀୟ ସ୍ମୃତି ଭିତରେ ପଲ୍ଲୀ ପ୍ରକୃତିର ଜୀବନ୍ତ କାବ୍ୟକଳା ଏହାର ଛତ୍ରେ ଛତ୍ରେ ପ୍ରକଟିତ ହେବା ସହିତ ଜୀବନ-ବୋଧର ନିବିଡ଼ ସ୍ପର୍ଶ ମଧ ଏଥିରେ ରୂପାୟିତ ହୋଇଛି ।

ପଲ୍ଲୀରେ କବିଙ୍କ ଜନ୍ମ । ପିଲାବେଳୁ ଧୂଳିମାଟିର ଜୀବନକୁ ନିରୀକ୍ଷଣ କରିବାର ଭାବ ତାଙ୍କ ଭିତରେ ଥିଲା । ଜୀବନର ସୁଖ ଦୁଃଖ, ଭଲମନ୍ଦ, ପାପପୁଣ୍ୟର ଫେଣ୍ଟା ଫେଣ୍ଟି ରୂପ କବିଙ୍କ ଭିତରେ ଯେଉଁ ଛାପ ପକେଇ ଥିଲା, କୈଶୋରରେ ତାର ମାର୍ମିକ ଅନୁଶୀଳନ ତାଙ୍କ କବିତାରେ ପ୍ରକଟିତ ହୋଇଛି । କବି ବାଲ୍ୟକାଳରୁ ଜନ୍ମିତ ମାତାଙ୍କୁ ହରେଇଥିଲେ । ମା'. କୋଳ ବିନା ଜୀବନର ଦୁର୍ବିସହ ଭାବ କବିଙ୍କୁ ପ୍ରତି ମୁହୂର୍ତ୍ତରେ ଖୁବ୍ ଯନ୍ତ୍ରଣା ଦେଇଛି । ସବୁ ପୂର୍ଣ୍ଣତା ଭିତରେ ସେ ଅନେକ କିଛି ଶୂନ୍ୟତା ଅନୁଭବ କରିଛନ୍ତି । '' ଅତି ଶୈଶବରେ ଜନନୀ ମୋହର ଗଲେ ଛାଡ଼ି ଚାଲି ମତେ''--କରୁଣ ପ୍ରକାଶ ଭିତରେ କବି ବର୍ଷଣ ମୁଖର ଗମ୍ଭୀର ରାତ୍ରିରେ ଯେଉଁ କେତୋଟି ସୁମଧୁର ମୁହୂର୍ତ୍ତ ଜନନୀ କୋଳରେ କଟାଇଥିଲେ ତାର ସ୍ମୃତି କୈଶୋରରେ ଆନ୍ଦୋଳିତ ହୋଇଛି :

> 'ବରଷା କାଳରେ ଜନନୀ କୋଳରେ
> ଶୋଇଥିଲି ସୁଖେ ଯେବେ
> ଗମ୍ଭୀର ନିଶୀଥେ ଗୀତ ଶୁଭୁଥିଲା
> ମନେପଡ଼େ ତାହା ଏବେ ।' (ନବ ବର୍ଷା ଭାବନା)

କବିଙ୍କର ସେ ସୁଖକୁ ନିଷ୍ଠୁର କାଳ ଛଡ଼େଇନେଇଛି । କବି ତାକୁ ଝୁରି ହୋଇଛନ୍ତି । ଗୁଣି ହୋଇ ଛନ୍ତି । ପ୍ରତ୍ୟେକ ବ୍ୟକ୍ତି ପାଇଁ ଜନ୍ମଦାତ୍ରୀ ମା'ର ସ୍ନେହ ମମତା ଚିର ଅଭୁଲା । ଅପାଶୋରା । କାରଣ ମାତୃ ସ୍ନେହରେ କୌଣସି ପ୍ରକାର ସ୍ୱାର୍ଥ କିମ୍ବା ଆବିଳତାର ସ୍ପର୍ଶ ନଥାଏ । ଏହା ନିର୍ମଳ, ବିମଳ, ଅମୃତସମ । ଅସରନ୍ତି ସେ ସ୍ନେହଧାରା । ସନ୍ତାନ ପାଇଁ ତାହା ଅକ୍ଷୟ ଭଣ୍ଡାର । ସଂସାରରେ ଅନ୍ୟସମସ୍ତ ସ୍ନେହ, ମମତା ଓ ପ୍ରୀତିର ସ୍ୱରୂପ କଳି ହୁଏ । ମାତ୍ର ଅତଳ ସାଗର ପରି ମାତୃସ୍ନେହ ସୀମାହୀନ । ଅକଳନ । ଅନ୍ୟକୌଣସି ସ୍ନେହ ମମତା ମାତୃସ୍ନେହ ସହିତ ତୁଳନୀୟ ହୋଇପାରେନା । ସେ ଅତୁଳନୀୟ । ଅବର୍ଣ୍ଣନନୀୟ । କେବଳ ଏକ ଦିବ୍ୟ ଅନୁଭବ । ମାତୃହରା କବି-ହୃଦୟ କୈଶୋରରେ ସେଇଥିପାଇଁ ବିକଳି ଉଠିଛି ତାଙ୍କର 'ମାତୃମଙ୍ଗଳ' କବିତାର ପଙ୍‌କ୍ତିରେ :

'ଅନନ୍ତ ଅକ୍ଷୟ ଅମୃତ ଭଣ୍ଡାର
ପାନେ ନ ମେଣ୍ଟଇ କ୍ଷୁଧା ।'

x x x x x

'ନିର୍ମଳ ନିଃସ୍ୱାର୍ଥ ମାତୃ ସ୍ନେହ ସରି
ଆଉ କେହି ନୁହେଁ ପରା ।'

x x x x x

'ପ୍ରାବୃଟେ ନିଦାଘେ ସମାନ ସେ ସିନ୍ଧୁ
ନ ହୁଏ ତାର କଳନା ।'

ଶିଶୁ ନିଷ୍ପାପ । ସାଂସାରିକ ମାୟା, ମୋହ, ଆବର୍ଜନା ତାକୁ ସ୍ପର୍ଶ କରି ପାରେନି । ଧୂଳିମାଟିର ଜୀବନ ତା'ର ପ୍ରକୃତିର ନୈସର୍ଗିକ ରୂପ ଶୋଭାରେ ହଜିଯାଏ । ପଲ୍ଲୀ ଜୀବନରେ ନବ ବର୍ଷା ଯେଉଁ ଅପାଶୋରା ଛବି ସୃଷ୍ଟି କରେ ତାରି ଭିତରେ ପ୍ରକୃତିର ଶିଶୁ ସେମାନଙ୍କର ଚପଳ ଭାବକୁ ମନ୍ଦ୍ର ମଧୁର କରି ସଜାନ୍ତି । କେତେବେଳେ ମାଆ କୋଳରେ, କେତେବେଳେ ଆଈମା' କୋଳରେ ଶୋଇ ଶୋଇ କିମ୍ବା ଗାଁ ଦାଣ୍ଡରେ ଖେଳୁଥିବା ସମୟରେ ବର୍ଷାକୁ ଦେଖି 'ମେଘ ବରଷିଲା ଟପର ଟପର କେଶୁର ମାଇଲା ଗଜା ' ଗୀତ ଭିତରେ ନିଜକୁ ହଜେଇ ଦିଅନ୍ତି ।

ପ୍ରଭାତରୁ ଉଠି ପିଲାମାନେ ଛତୁ ତୋଳିବାର ଦୃଶ୍ୟ, କାଁଇଚ ଲତାର ସାହାଡ଼ା ବୃକ୍ଷ ତଳେ ରାମ, ଲକ୍ଷ୍ମଣ, ବିଶ୍ୱାମିତ୍ର, ଭୀମ, କୀଚକ ପ୍ରଭୃତି ଚରିତ୍ରର ଅଭିନୟ ଅତୀତର ରୋମନ୍ଥନ ହେଲେ ବି ସରଳ ନିଷ୍ପାପ ଜୀବନଚିତ୍ର କବି ପ୍ରାଣରେ ସାଇତା ସ୍ମୃତି ହୋଇ ରହିଛି । ପରିଣତ ଜୀବନରେ ସାଂସାରିକ ଜୀବନ କ୍ଷେତ୍ରରେ ପଦାର୍ପଣ କଲେ ମଧ୍ୟ ଶୈଶବର ସେଇସବୁ ଦୃଶ୍ୟ ଏବଂ ସ୍ମୃତିରାଜି ସାରା ଜୀବନପାଇଁ ଅପାଶୋରା ହୋଇ ରହେ । ତାହାହିଁ ପ୍ରକୃତ ଜୀବନ । ଅମୃତର ଜୀବନ ।

କବି ନନ୍ଦକିଶୋର ପଲ୍ଲୀ ପ୍ରକୃତିକୁ ଯେମିତି ନିରୀକ୍ଷଣ କରିଛନ୍ତି ପଲ୍ଲୀ ଜୀବନର ଆତ୍ମାକୁ ସେଇଭଳି ଖୁବ୍ ନିକଟରୁ ଚିହ୍ନିଛନ୍ତି । 'ନିର୍ଝରିଣୀ'ର ଅନେକ କବିତାରେ ଏହାର ଚିତ୍ର ଖୁବ୍ ସ୍ପଷ୍ଟ ହୋଇଛି । ବର୍ଷା ଋତୁରେ କେଳାର ହାବୁଡ଼ା ଖେଳ, ଶବରୁଣୀ ମାନଙ୍କର ଜାମୁଡାଳି ନାଚ, ଖୁଦୁରୁକୁଣୀ ଓଷା, ଜହ୍ନିଫୁଲ ଗୀତ ପ୍ରଭୃତି କେବଳ ଯେ ପଲ୍ଲୀ ପରିବେଶକୁ ଆନନ୍ଦ ମୁଖର କରେ ତାନୁହେଁ, ଅଭାବ ଅନଟନ ଦୁଃଖ ଦାରିଦ୍ର୍ୟର ସୀମାରେଖା ତଳେ ରହିଥିବା ପଲ୍ଲୀ ଜୀବନକୁ ବିମଳ ଆହ୍ଲାଦର ସ୍ପର୍ଶ ଦେଇଥାଏ । ପଲ୍ଲୀ ଲଳନାର ଜୀବନ ଚିତ୍ରରେ ଆଭାସିତ 'ନିର୍ଝରିଣୀ' ଖୁବ୍ ହୃଦୟଗ୍ରାହୀ ହୋଇ ପାରିଛି । ଟିକି ନୂଆ ବୋହୂଟି ଜଳ କଳସୀ ଧରି ଆସୁଆସୁ ଟିକି ପାଦରେ ଭାରସାମ୍ୟ ରକ୍ଷା କରି ନପାରି ପଡ଼ି ଯିବାର ଦାରୁଣ ଦୁଃଖ ଟିକି ପିଲାମାନଙ୍କୁ ହସର ଖୋରାକ ଯୋଗାଇଛି । ନୂଆବୋହୂଟିର ବିକଳ ଏବଂ କରୁଣ ରୂପକୁ ତଉଲି ଦେଖିବାର ବୟସ ସେମାନଙ୍କର ହୋଇନି । ତେଣୁ ବିମଳ ହାସ୍ୟରସର ମଧୁର ଝରଣା ଝରି ଯାଇଛି ସେମାନଙ୍କର ଓଠରେ । କର ତାଳିରେ । ବର୍ଷା ଋତୁରେ ପଲ୍ଲୀ ବଧୂର କଷଣ ଅନେକ । ଶୁଖିଲା ଜାଳେଣୀ ସଂଗ୍ରହ ନକଲେ ରୋଷାଇବାସ ପାଇଁ ତାକୁ ଭାରି ହିନସ୍ତା ହେବାକୁ ପଡ଼ିଥାଏ । ଶାଶୁ ନଣନ୍ଦଙ୍କ ଗଂଜଣା ସହିବାକୁ ପଡ଼ିଥାଏ । ବୋହୂଟିଏ ଘରକୁ ଆସିଲା ପରେ ତା' ଉପରେ ସବୁ ବୋଝ ଲଦି ଦିଆଯାଏ । ପାଣି ଅଣାଠାରୁ ଆରମ୍ଭ କରି ଜାଳେଣୀ ସଂଗ୍ରହ, ଶାଗ ମୁଗ ସଂଗ୍ରହ, ରୋଷାଇବାସ ସବୁ କିଛି କରିବା ଦାୟିତ୍ୱ ନୂଆବୋହୂଟିର ।

'ମିଟି ମିଟି ଆଖି ନୂଆ ବୋହୂଟିଏ
ସଜାଡୁ ଥିଲା ଜାଳେଣି

ବାଡ଼ ଉହାଡ଼ରୁ କୁଆ ମଇତାଟି

ତୋଳୁ ଥିଲା ତା ସଂଗିନୀ ।' (ନବ ବର୍ଷା ଭାବନା)

ଏଇ ପଙ୍‌କ୍ତି ଭିତରେ କବି ପଲ୍ଲୀର ଦୁଇ ନବବଧୂଙ୍କର ସମାନ ଜୀବନଧାରାର ଚିତ୍ର ଦେଇଛନ୍ତି । ଏ କବିତାରେ ଶାଶୂ ତାର ସାନ ପିଲାକୁ ସାଙ୍ଗରେ ଧରି ଭାଗବତ ଟୁଙ୍ଗୀକୁ ଯାଏ ରାମାୟଣ ଶୁଣିବା ପାଇଁ ସଂଧ୍ୟା ବେଳେ । ସେଠୁ ଫେରିଲା ବେଳକୁ ବୋହୂ ରୋଷେଇ କାମରେ ବ୍ୟସ୍ତ ଥାଏ । ନଣନ୍ଦ ବା ଦିଅରଟି ବୋହୂ ପାଖକୁ ଯାଇ 'ମେଘ ବରଷିଲା ଟପଲ ଟପଲ' ବର୍ଷା ଗୀତଟି ଆନନ୍ଦରେ ଗାଏ । ପଲ୍ଲୀ ବଧୂମାନେ ଖୁବ୍ ପ୍ରତ୍ୟୁଷରୁ ବର୍ଷାଋତୁରେ ଡିଙ୍କିବୁଡ଼ି ଘର ପାଇଟି କରିବା ପରେ ନିଜର ନିତ୍ୟକର୍ମ କରିଥାନ୍ତି । ନିତ୍ୟ ନୈମିତ୍ତିକ ଜୀବନ ଚଳଣୀର ଦୁଃଖଦ ଦୀର୍ଘଶ୍ୱାସ ତାଙ୍କର ବାହାରି ଆସେ ପୁଷ୍କରିଣୀ କୂଳରେ ପିତୃଗୃହ ନିରୀକ୍ଷଣ କରିବା ସମୟରେ । ବାଲ୍ୟ ଜୀବନର ସୁଖ ଶାନ୍ତିର ଦିନକୁ ସ୍ମରଣ କରିବାରେ :

'ସରସୀ ତଟରୁ ଅନାଇ ସୁନ୍ଦରୀ

ପିତୃଗୃହ ଅଭିମୁଖେ

ବାଲ୍ୟ ନିଳୟର ସୁଖ ଶାନ୍ତି ଚିନ୍ତି

ନିଶ୍ୱାସ ଛାଡ଼ନ୍ତି ଦୁଃଖେ ।' (ବର୍ଷା ମଙ୍ଗଳ)

ପଲ୍ଲୀବଧୂର ଜୀବନକଷଣ ଶାଶୂ ନଣନ୍ଦଙ୍କ ଗଂଜଣାରେ ଯେତିକି ଭାରାକ୍ରାନ୍ତ ନହୁଏ : ପ୍ରବାସୀ ପତିର ଅବର୍ତ୍ତମାନରେ ତାର ବେଦନାବିଧୂର ପ୍ରାଣ ସେତିକି ହାହାକାର କରେ । ପତି ବିନା ଶ୍ୱଶୁରାଳୟ ତାପାଇଁ ଶୂନ୍ୟ ମନେ ହୁଏ । 'ବର୍ଷା ମଙ୍ଗଳ'ରେ ବିଧବା ବଧୂର ଦୀର୍ଘଶ୍ୱାସ, ଅଶ୍ରୁଳ ଜୀବନ କାହାଣୀର ବାସ୍ତବ ରୂପଚିତ୍ର ପରି 'ଜାକବାରତା'ରେ ବିରହିଣୀ ନବବଧୂର ଜୀବନ ବୈକଲ୍ୟର ଚିତ୍ର ଖୁବ୍ ଜୀବନ୍ତ ଏବଂ ହୃଦୟସ୍ପର୍ଶୀ ହୋଇପାରିଛି ।

ପଲ୍ଲୀବାସୀର ଜୀବନ ପ୍ରାଚୁର୍ଯ୍ୟ କିମ୍ବା ଉପଭୋଗ ସର୍ବସ୍ୱ ଜୀବନ ନୁହେଁ । ଦୁଃଖ ଦାରିଦ୍ର୍ୟର ନିଷ୍ପେଷଣ ତାର ଚିର ସହଚର । ତଥାପି ସେ ଜୀବନ ସଂଗ୍ରାମରେ ହାରିଯାଏ ନାହିଁ । ପଳାୟନ ପନ୍ଥୀ ହୁଏ ନାହିଁ । ମାଟି ସାଙ୍ଗରେ ମାଟି ହୋଇ, ପ୍ରକୃତିର ସବୁ କିଛି ଦାଉ ଧକ୍କା ସହି ସେ ତାର ଜୀବନ ଧରି ରଖେ । ପରିବାର ଚଳାଏ । ଜୀବନର ରାହା ବାଛେ । ଖରା ଶୀତକୁ ସେ

ଯେମିତି ଖାତିର କରେନି, ବର୍ଷାଋତୁର ପ୍ରଚଣ୍ଡତାକୁ ମଧ୍ୟ ସେମିତି ଭୟ କରେନି । ନିତିଦିନିଆ ଦୁଃଖୀର ଜୀବନ ତା'ର ରଥଚକ୍ର ଭଳି ଗଡ଼ି ଗଡ଼ି ଯାଏ । କବିଙ୍କ ଭାଷାରେ :

'ପ୍ରଭାତୁ ଉଠିଣ ଯାନ୍ତି ଯେଝା ଦୁଃଖେ

ଦୁଃଖୀ ଗ୍ରାମବାସୀମାନେ ।' (ନବବର୍ଷା ଭାବନା)

କିମ୍ବା : 'ପ୍ରଭାତୁ ଉଠିଣ ଯେ ଯାହା ଦୁଃଖରେ

ଖରେ କରନ୍ତି ଗମନ

ତାଳ-ଆତପତ୍ର ମସ୍ତକେ ଧରିଣ

ଦୁଃଖୀ ଗ୍ରାମବାସୀଗଣ ।' (ବର୍ଷା ମଙ୍ଗଳ)

ଏ ବର୍ଣ୍ଣନା ଅତି ଚମତ୍କାର । ପଲ୍ଲୀ କୃଷକ ଚିର ଦୁଃଖୀ । ତା'ର ଦୁଃଖକୁ ବର୍ଷା ପ୍ରକୃତି ଆହୁରି ଦୁଃଖମୟ କରେ । ବନ୍ୟା, ବାତ୍ୟା ଏବଂ ଧୋଇ ପ୍ରଭୃତି ବିପ୍ଯାତ ତାର ହାଡ଼ଭଙ୍ଗା ପରିଶ୍ରମକୁ ପଣ୍ଡ କରିଦିଏ । ପ୍ରକୃତିର ଏଇ ପ୍ରତିକୂଳ ଆଚରଣ କୃଷକର ମେରୁଦଣ୍ଡକୁ ଦୋହଲାଇ ଦିଏ । ତଥାପି ସେ ସବୁକିଛିକୁ ସହ୍ୟକରି ତାର ଜୀବନସଂଗ୍ରାମରେ ବ୍ରତୀ ହୁଏ । ଆଗେଇ ଯିବାର ସାହାସ ସଂଚୟ କରେ ।

କବି ନନ୍ଦକିଶୋର ପଲ୍ଲୀ ଜୀବନର ବିଭିନ୍ନ ଚିତ୍ର ଆଙ୍କିବାରେ କେବଳ ଯେ ସଫଳ ହୋଇଛନ୍ତି ତା' ନୁହେଁ--ଜୀବନର ଚିରନ୍ତନ ମୂଲ୍ୟବୋଧର ସତ୍ୟ ଉଦ୍‌ଘୋଷଣ କରି 'ନିର୍ଝରିଣୀ'କୁ ଆହୁରି ଜୀବନ-ସଂପର୍କିତ କରି ଗଢ଼ି ତୋଳିଛନ୍ତି । ମଣିଷ ଜୀବନ ନଶ୍ୱର, କ୍ଷଣିକ, କ୍ଷୟଶୀଳ । ଏକଥା ଜାଣି ମଧ୍ୟ ମଣିଷ ଏ ସଂସାରରେ ଅନ୍ୟାୟ, ଅନୀତି ପଥରେ ଅଗ୍ରସର ହେଉଛି । କୁକର୍ମରେ ଲିପ୍ତ ରହୁଛି । ଅହଂସର୍ବସ୍ୱ ବ୍ୟକ୍ତିବାଦକୁ ଜୀବନର ପରମ ଏବଂ ଚରମ ସତ୍ୟ ବୋଲି ବିବେଚନା କରୁଛି । ଷଡ଼ରିପୁର ବଶବର୍ତ୍ତୀ ହୋଇ ଇନ୍ଦ୍ରିୟ ସୁଖକୁ ସର୍ବଶ୍ରେଷ୍ଠ ସମ୍ପଦ ବୋଲି ମନେ କରୁଛି । ଚଉଦ ଭୁବନକୁ ନିଜ ଶକ୍ତି ଭିତରେ ବାନ୍ଧି ରଖିବାର ଗର୍ବ କରୁଛି । କିନ୍ତୁ ଧନ, ଜନ, ଯୌବନ, ଗର୍ବ, ଅଭିମାନ ପ୍ରଭୃତି ଯେ ଜୀବନର ପରମ ସତ୍ୟ ନୁହେଁ ସେ କଥାକୁ ଚେତେଇ ଦେଇଛନ୍ତି କବି ତାଙ୍କର 'ରିପୁ ବିପ୍ଲବ', 'ନିୟତି ପୀଡ଼ନ', 'ଜରାମରଣ', 'ଡାଆଣିଆ ଖରା', 'ପ୍ରଭାତ ଅବକାଶ ' ପ୍ରଭୃତି କବିତା ମାଧ୍ୟମରେ ।

'ଧନ ଯୌବନ ଜ୍ଞାନ ଗର୍ବରେ ଭରା
ଅଜ୍ଞାନ ନର ଧରା ମଣାଇ ସରା ।'

କିମ୍ବା : 'ଧନ ଜନ ଯୌବନ ନାମରେ ମତ୍ତ
ଅକର୍ମେ ହୁଏ ନର ସତତ ରତ ।' (ରିପୁ ବିପ୍ଲବ)

ଏଭଳି ଅନେକ ଉଦାହରଣ ମାଧ୍ୟମରେ କବି ଜୀବନ ପାଇଁ ସତର୍କ ଘଣ୍ଟି ବାରମ୍ବାର ବଜାଇଛନ୍ତି । ପରିବର୍ତ୍ତନଶୀଳ ଦୁନିଆରେ କିଛି ବି ଚିରସ୍ଥାୟୀ ନୁହେଁ । 'ଆଜିର ମିତ୍ର କାଲି ବିଷମ ଅରି' (ନିୟତି ପୀଡନ) ହେବାଟା ଯେପରି ସାଧାରଣ, ସତ୍ୟ, ସ୍ୱାର୍ଥ ପାଇଁ 'ଭାଇଗଳାରେ ଛୁରୀ ଦେଇଛି ଭାଇ' (ଦୁଃଖିର ସଂସାର) ମଧ୍ୟ ସେହିପରି ଏକ ସାଧାରଣ ଘଟଣା । କବି ଏହିପରି ଅନେକ ପଙ୍‌କ୍ତିରେ ସଂସାରର ବିଚିତ୍ର ତଥା ବାସ୍ତବ ସତ୍ୟର ପ୍ରକାଶ କରିବା ସଙ୍ଗେ ସଙ୍ଗେ ଜୀବନର ପ୍ରକୃତ ତଥା ପରମ ସତ୍ୟ ସମ୍ପର୍କରେ ସୂଚନା ଦେଇଛନ୍ତି । ବିଭୁ ଚେତନା-ବୋଧର ଚିରନ୍ତନୀ ସ୍ୱାକ୍ଷର 'ନିର୍ଝରିଣୀ'ର ପୃଷ୍ଠାରେ ଦେଖିବାକୁ ମିଳିଥାଏ । ଯାହା ଜୀବନ ପାଇଁ ଏକମାତ୍ର ସାହାରା, ଦିବ୍ୟ ସଂଧାନ ।

ପଲ୍ଲୀପ୍ରକୃତିର ଟିକିନିଖି ଜୀବନ୍ତ ଶୋଭାରାଶି ନୀରିକ୍ଷଣ କରିବାରେ କବିପ୍ରାଣ ଯେମିତି ଶ୍ରଦ୍ଧାଶୀଳ ; ସମାଜ, ଜୀବନ ତଥା ସଂସାରର ପ୍ରତିଟି ରୂପ ସତ୍ତା ଅନୁଧ୍ୟାନ କରିବାରେ କବି ଚକ୍ଷୁ ସେତିକି ମନନଶୀଳ କହିଲେ ସତ୍ୟର ଅପଳାପ ହେବନାହିଁ । ଗୀତି କବିତାର ଭାବଧର୍ମ ଭିତରେ କବିତା ଗୁଡିକ ରଚିତ ହୋଇଥିଲେ ମଧ୍ୟ ଅଳ୍ପ ଭିତରେ ଅନେକ କିଛିର ଇସାରା ଦେଇ କବି ପଲ୍ଲୀଜୀବନର ବାସ୍ତବ ଛବି ସୃଷ୍ଟି କରିବାରେ ବେଶ୍ ସଫଳ ହୋଇଛନ୍ତି । □

# ମାନବିକ ଚେତନାର ଉତ୍ତରଣ : ନନ୍ଦକିଶୋରଙ୍କ ବୈଶିଷ୍ଟ୍ୟ

## ▫ ସୌରୀବନ୍ଧୁ କର

ପଲ୍ଲୀକବି ନନ୍ଦକିଶୋରଙ୍କ ସଂପର୍କରେ ମାୟାଧର ମାନସିଂହ ଲେଖିଛନ୍ତି, ''ଉତ୍କଳର ପଲ୍ଲୀଗହଳରେ ଅଶିକ୍ଷିତ, ଅଜ୍ଞାତ, ସରଳ ଜନତାର ପ୍ରାଣରେ କି କବିତା, କି ମଧୁରତା ଅଛି, ତାର ଆସ୍ୱାଦ ଆମେ ଫକୀରମୋହନଙ୍କ ଗଦ୍ୟରେ ଓ ନନ୍ଦକିଶୋରଙ୍କ ପଦ୍ୟରେ କେବଳ ପାଉ ।'' 'ଓଡ଼ିଆ ସାହିତ୍ୟର ଇତିହାସ'ର ବିଶିଷ୍ଟ ଗବେଷକ ଡଃ ନଟବର ସାମନ୍ତରାୟ ଲେଖିଛନ୍ତି, ''ଗୋଟିଏ ଅବହେଳିତ ଜୀବନଧାରାକୁ ବଳିଷ୍ଠ ଲେଖନୀ ଚାଳନାରେ ନୂତନ ଭାବେ ସୁପ୍ରତିଷ୍ଠ କରି ଆତ୍ମବିସ୍ମୃତ ଜାତିର ମନ-ପ୍ରାଣକୁ ତା'ପ୍ରତି ଆକର୍ଷଣ କରିଆଣିବାରେ ପରମ କୃତିତ୍ୱ ହେଉଛି ନନ୍ଦକଶୋର ବଳଙ୍କର : ତାହାହିଁ ତାଙ୍କ ସର୍ବଶ୍ରେଷ୍ଠ କବି କର୍ମର ସର୍ବଶ୍ରେଷ୍ଠ ପରିଚୟ ମାତ୍ର ।''

ପଲ୍ଲୀକବି ନନ୍ଦକିଶୋରଙ୍କର କାବ୍ୟକୃତିକୁ ଉପରୋକ୍ତ ଦୁଇଟି ଦୃଷ୍ଟିକୋଣରୁ ବିଚାର କରିବା । ନନ୍ଦକିଶୋର ଯଦିଓ ଗଦ୍ୟଶିଳ୍ପୀଭାବେ କିଛିଟା ସୁଖ୍ୟାତି ଲାଭ କରିଥିଲେ ତଥାପି ଓଡ଼ିଆ ସାହିତ୍ୟରେ ତାଙ୍କର ସ୍ଥାନ ନିରୂପଣ କରିବାବେଳେ ବା ତାଙ୍କର କୃତିତ୍ୱ ଉପରେ ଟିପ୍‌ପଣୀ ଦେବାବେଳେ କେବଳ ପଦ୍ୟ ସାହିତ୍ୟ ହିଁ ମନକୁ ଆସେ, ବିଶେଷ କରି ତାଙ୍କ କବିତାର ପଲ୍ଲୀଚିତ୍ର ।

ନନ୍ଦକଶୋରଙ୍କର ଜନ୍ମ ୧୮୭୫ମସିହା ଡିସେମ୍ବର ୨୨ ତାରିଖ । ୧୮୯୯ରେ ସେ ପାଶ୍ କରନ୍ତି ବି.ଏ. । ସେହି ସମୟ ପରାଧୀନତାର ସମୟ । ବ୍ରିଟିଶ ଦାସତ୍ୱ ଶୃଙ୍ଖଳରେ ବାନ୍ଧି ହୋଇଯାଇଥିଲା ଏ ଜାତି । ହରାଇଥିଲା ତାର ଆତ୍ମ ବିଶ୍ୱାସ । କେବଳ ସେତିକି ନୁହେଁ, ଓଡ଼ିଆ ଏକ ଭାଷା ନୁହେଁ ବୋଲି ଏହା ବିରୁଦ୍ଧରେ ଆନ୍ଦୋଳନ ଏବଂ ଓଡ଼ିଆ ଭାଷାକୁ ବଞ୍ଚାଇ ରଖିବା ପାଇଁ ଫକୀରମୋହନ ଇତ୍ୟାଦିଙ୍କର ସଂଗ୍ରାମ ଏଯାବତ୍ ଏଜାତି ଭୁଲି ପାରି ନାହିଁ । ସେହି ପରିପ୍ରେକ୍ଷୀରେ ନନ୍ଦକିଶୋର ପଲ୍ଲୀ ଜୀବନର ଚିତ୍ରକୁ ସାହିତ୍ୟମାଧ୍ୟମରେ ଜୀବନ୍ତ ଭାବେ ପ୍ରକାଶ

କରି ପଲ୍ଲୀବାସୀଙ୍କର ଚେତନାରେ ନୂତନତା ଆଣିଦେଇଛନ୍ତି ।

ଯେକୌଣସି ଉଚ୍ଚାଙ୍ଗ ସାହିତ୍ୟ ତା'ର ଗଭୀରତମ ଅନୁଭବ ଓ ଭାବୋଚ୍ଛ୍ୱାସରୁ ଜଣାଯାଏ । ଭାରତୀୟ ସାହିତ୍ୟର ପରଂପରା ହେଉଛି ଆଶା ଓ ବିଶ୍ୱାସର ପରଂପରା । କବିତା ଜୀବନର ସୌନ୍ଦର୍ଯ୍ୟବୋଧକୁ ଚିହ୍ନିତକରେ । ନନ୍ଦକିଶୋରଙ୍କର ପ୍ରତ୍ୟେକ କବିତାରେ ଜୀବନର ଆଦର୍ଶବୋଧ ଓ ସୌନ୍ଦର୍ଯ୍ୟବୋଧ ସହିତ ଆଶା ଓ ବିଶ୍ୱାସ ସମ୍ମିଶ୍ରିତ । ସେଥିପାଇଁ ସେ ରାଧାନାଥଙ୍କଠାରୁ ମଧ ସ୍ୱତନ୍ତ୍ର । କେବଳ ସେତିକି ନୁହେଁ, ସ୍ୱାଧୀନତା ପାଇଁ ବ୍ୟାକୁଳିତ ହେଉଥିବା ତାଙ୍କ ହୃଦୟର ଜାତୀୟ ଚେତନାର ତୀବ୍ରତାକୁ ସେ ତିର୍ଯ୍ୟକ ଭାବେ କବିତା ମାଧମରେ ଉପସ୍ଥାପିତ କରିଥିଲେ ।

'ମୋ ବାଡ଼ି ଭିତରେ ଲୁଣର ଅମଳ
ଅଲଣା ଖାଆନ୍ତି ଦୁଃଖୀ ଓଡ଼ିଆ,
ଲୁଚାଇ ଖାଇଲେ ପକଡ଼ି ନିଅନ୍ତି
ଖୋଲ୍‌ଟି କହି ତାଙ୍କୁ ନୀଳ ପଗଡ଼ିଆ ।'

(ନ.ଗ୍ର. : ପୃ.୩୧୮)

ଲୁଣ ଥିଲା ସ୍ୱାଧୀନତାର ପ୍ରତୀକ । ଗାନ୍ଧୀଙ୍କର ଆହ୍ୱାନରେ ସମଗ୍ର ଭାରତରେ ଲବଣ ସତ୍ୟାଗ୍ରହ ଏ ଜାତିର ଧମନୀରେ ସୃଷ୍ଟି କରିଥିଲା ସ୍ପନ୍ଦନ ଓ ବ୍ରିଟିଶ ଉପନିବେଶବାଦ ଥରହର ହୋଇ ଉଠିଥିଲା । ବ୍ୟକ୍ତି ଚେତନାର ଉତ୍ତରଣରୁ ସମାଜ ଓ ସମଷ୍ଟିକୁ ଆବୋରି ନେବାର ସଚେତନ ପ୍ରୟାସ ନନ୍ଦକିଶୋରଙ୍କର କବିତାରେ ପରିଲକ୍ଷିତ । ଭାରତୀୟ ଭାବନା ଓ ଉତ୍କଳ ଚେତନାରେ ନିଜକୁ ସଂପୂର୍ଣ୍ଣ ଭାବେ ଅଙ୍ଗୀକାର କରିବାର ପ୍ରକାଶରେ ନନ୍ଦକିଶୋର ସଫଳତା ପାଇଛନ୍ତି । ଏଇ କାବ୍ୟିକ ସଫଳତା ମୂଳରେ ନନ୍ଦକିଶୋରଙ୍କ ମନ ଭିତରେ ଯେଉଁ ଦାରୁଣ ଦୁଃଖ ଆନ୍ଦୋଳିତ ହୋଇଛି ତାର ପ୍ରକାଶ 'ଜନ୍ମଭୂମି'ରେ ଏଇଭଳି :

'ଆଜି ଥୋକେ ସୁତ ହେଲେଣି ତେଲେଙ୍ଗା
ଥୋକାଏ ଖୋରଟ ଥୋକେ ବଙ୍ଗାଳୀ

ନିଜ ଘର ଛାଡ଼ି ହୋଇ ନାରଖାର

ବୁଲନ୍ତି ଯେସନ ଦାସ କାଙ୍ଗାଳୀ ।

ଭଗିନୀସୁତ ମୋ ବଡ଼ ବଡ଼ ଯେତେ

ରାଜକର୍ମଯାକ ବସନ୍ତି ମାଡ଼ି

କୋଟିପୁତ୍ରେ ମୋର ଦୂରେ ଦୂରେ ଥାଇ

ମୂଳ ଲାଗୁଛନ୍ତି ଯେସନ ହାଡ଼ି ।'

ଭାରତୀୟ ପରାଧୀନତାର ମୂଳକାରଣ ଏ ଦେଶରେ ଦେଖା ଦେଇଥିବା କୁସଂସ୍କାର, ପାଶ୍ଚାତ୍ୟ ସଂସ୍କୃତିର ଅନ୍ଧ ଅନୁକରଣ, ଗ୍ରାମ୍ୟ ଜୀବନ ପ୍ରତି ବିତସ୍ପୃହ ମନୋଭାବ ଇତ୍ୟାଦି ପ୍ରତି ନନ୍ଦକଶୋର ଥିଲେ ଯଥେଷ୍ଟ ସଚେତନ । ତା' ନହୋଇଥିଲେ ସେ ତାଙ୍କର 'ପଲ୍ଲୀଚିତ୍ର' (୩ୟଭାଗ)ର 'ଉତ୍କଳ ଶିକ୍ଷା', 'ଉତ୍କଳ କୃଷକ', 'ଉତ୍କଳ ଲଳନା', 'ବାଲ୍ୟବିଧବା', 'ପଲ୍ଲୀର କ୍ଷୁଦ୍ରତା', 'ପଲ୍ଲୀର କୁସଂସ୍କାର', 'ପଲ୍ଲୀର ବିଳାସୀ ଯୁବକ' ଇତ୍ୟାଦି ବିଷୟ ଉପସ୍ଥାପନା କରି ତାକୁ କଠୋର ଭାବରେ ସମାଲୋଚନା କରିନଥାନ୍ତେ ।

'ଅସାବଧାନରେ କେହି ଯେବେ ଗାଭୀ ମାର୍ଜାର ମାରଇ ଗ୍ରାମେ

ଲୁଣ୍ଠନ୍ତି ବ୍ରାହ୍ମଣେ ରଙ୍କ ଗଣ୍ଠିଧନ ପାପ ପ୍ରାୟଶ୍ଚିତ ନାମେ ।'

ସମାଜ ବ୍ୟବସ୍ଥାରେ ଏ ପ୍ରକାର ସାମାଜିକ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ ସ୍ୱାଧୀନତା ଆନ୍ଦୋଳନ ପାଇଁ ସଂଗ୍ରାମୀ ଗଢ଼ି ତୋଳିବା ଓ ଜନତାକୁ ଏକାଠି କରିବାର ନନ୍ଦକିଶୋରଙ୍କର ଏହା ଯେ ଏକ ବୈପ୍ଳବିକ ଆହ୍ୱାନ ଏହାକୁ ଅସ୍ୱୀକାର କରାଯାଇ ନପାରେ ।

ନନ୍ଦକିଶୋର ଥିଲେ ଶିକ୍ଷାବିତ୍ ଓ ପାଶ୍ଚାତ୍ୟଶିକ୍ଷା ସଂପର୍କରେ ତାଙ୍କର ଗଭୀର ଧାରଣା ଥିଲା । ପାଶ୍ଚାତ୍ୟ ସାହିତ୍ୟ ଓ ଜୀବନକୁ ସେ ଗ୍ରହଣ ନ କରି, ସେ ସମାଜକୁ ନିରିଖେଇ ଓ ନିଠେଇ ଚାହିଁଥିଲେ ଓ ସ୍ୱାଧୀନତାପାଇଁ ବ୍ୟାପକ ସଂଗ୍ରାମ ଗଢ଼ିତୋଳିବାକୁ ହେଲେ ସମାଜ ବ୍ୟବସ୍ଥାରେ ସଂପୂର୍ଣ୍ଣ ପରିବର୍ତ୍ତନ ଲୋଡ଼ା ଏଥି ପ୍ରତି ସେ ସମ୍ପୂର୍ଣ୍ଣ ସଚେତନ ହୋଇ ନାରୀଶିକ୍ଷା ଉପରେ ଗୁରୁତ୍ୱ ଦେଇ 'ଉତ୍କଳ ଲଳନା' କବିତା ରଚନା କରିଥିଲେ । ଏକ ମୁକ୍ତ ସମାଜ ବ୍ୟବସ୍ଥା ହିଁ ମଣିଷକୁ ଭଲରେ, ସ୍ୱଚ୍ଛନ୍ଦରେ ବଞ୍ଚିବାରେ ସାହାଯ୍ୟ କରେ । ନାରୀ ଓ ପୁରୁଷ ସମାଜର

ଅଙ୍ଗ । ନାରୀକୁ ଭାରତୀୟ ଦର୍ଶନରେ ଶକ୍ତି ରୂପେ ଉପସ୍ଥାପିତ କରାଯାଇଛି । 'ଶକ୍ତି' ବିନା ଶିବ (ପୁରୁଷ) ଶବ (ନିବୀର୍ଯ୍ୟ) । ନନ୍ଦକିଶୋର ଏହାର ଗୁରୁତ୍ୱକୁ ଉପଲବ୍ଧି କରି ଲେଖିଛନ୍ତି :

'ଉଠିଲେ ରମଣୀ ଉଠିବେ ପୁରୁଷ ସମାଜର ଚକ୍ରଦ୍ୱୟ
ଉନ୍ନତି-ସ୍ୟନ୍ଦନ ଚାଲିବ ନାହିଁଟି ଏକ ନର ଚକ୍ର ଘେନି ।'

''ନାରୀ ଶିକ୍ଷା ଅଟେ ମହା ମଙ୍ଗଳ-ନିଦାନ
'ପାରିଜାତ ମାଳା' ତା'ର ଜ୍ୱଳନ୍ତ ପ୍ରମାଣ ।
ଏହାଦେଖି କେଉଁ ଅନ୍ଧ କରେ ଆସ୍ଫାଳନ
ନାରୀ ଶିକ୍ଷା ଅସତୀତ୍ୱ-ବୈଧବ୍ୟ କାରଣ ।''

'ସୁଶିକ୍ଷିତା ହେଲେ ମହିଳା ମଣ୍ଡଳୀ ଦିଗ୍‌ବିଜୟୀ ସୁପଣ୍ଡିତ
ବୀରସୁତ ବର୍ଗେ ବୀରଙ୍ଗନାଗଣ କରି ପାରନ୍ତି ପାଳିତ ।'

ନାରୀ ପୁରୁଷର ସାର୍ଥକ ସହଧର୍ମିଣୀ ହେବା ଉପରେ ଗୁରୁତ୍ୱ ଦେବାବେଳେ ସେ ନାରୀ ସମାଜ ଉପରେ ହେଉଥିବା ଅମାନବୀୟ ଅତ୍ୟାଚାରର ନିଖୁଣ ଚିତ୍ର ତୋଳିବାରେ ମଧ୍ୟ କୁଣ୍ଠାବୋଧ କରି ନାହାନ୍ତି । 'ଜେମାଦେଈ' କବିତାରେ ଜେମାଦେଈଙ୍କୁ ପ୍ରତୀକଭାବେ ନେଇ ସମାଜ ବ୍ୟବସ୍ଥା ଉପରେ ଆଘାତ କରିବା ବେଳେ ଯେପରି ମାର୍ମିକ ଢଙ୍ଗରେ ଉପସ୍ଥାପିତ କରିଛନ୍ତି, ତାହା ପାଠକର ମନ ଓ ପ୍ରାଣକୁ ଆନ୍ଦୋଳିତ କରେ ।

'ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର
ଜେମାଦେଈ କାନ୍ଦୁଛନ୍ତି ଦେଖି ବୁଢ଼ାବର ।
ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର
ଜେମାଦେଈଙ୍କର ବର ଅଶି ବରଷର ।
ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର
ଜେମାଦେଈ ହରାଇଲେ ଆଜି ବୁଢ଼ାବର ।
ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର
ଜେମାଦେଈ କାନ୍ଦୁଛନ୍ତି ଝୁରି ବୁଢ଼ାବର ।'

ଯେକୌଣସି କଳା ସମଗ୍ର ମଣିଷ ସମାଜ ପାଇଁ ଉଦ୍ଦିଷ୍ଟ । ନନ୍ଦକିଶୋର ପଲ୍ଲୀଜୀବନର ଚିତ୍ର ଦେବାବେଳେ, ପଲ୍ଲୀ ସମାଜର ସଂସ୍କାର କରିବା ପାଇଁ ଯେପରି ଗୁରୁତ୍ୱ ଦେଇଛନ୍ତି, ତାହା ସ୍ୱାଧୀନତା ପାଇଁ ସଂଗ୍ରାମରେ ଯୋଗଦେଇଥିବା ମୁକ୍ତିଯୋଦ୍ଧା ମାନଙ୍କୁ ସମଗ୍ର ମଣିଷ ସମାଜସହ ସାମିଲ କରି ପାରିଛି କହିଲେ ଭୁଲ ହେବନି । ନନ୍ଦକିଶୋରଙ୍କ କବିତା ସମାଜ ସହିତ ଓତଃପ୍ରୋତ ଯୋଡ଼ି ହୋଇଯାଇଛି । ଏହାହିଁ ତାଙ୍କର ସାର୍ଥକତା । ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ଜାତୀୟ ସଂଗ୍ରାମ ପାଇଁ ସମାଜର ସାମଗ୍ରିକ ଭିତ୍ତିଭୂମି ପ୍ରସ୍ତୁତ କରିବାରେ ସେ ଯେ ଜଣେ ନିପୁଣ ବିଦ୍ଧାଣୀ ଏହା ତାଙ୍କର ପ୍ରତ୍ୟେକ ରଚନାରୁ ପ୍ରମାଣ ମିଳେ । ତାଙ୍କର କବିତା ସାମାଜିକ ଅସ୍ତ୍ର ଭାବେ ବାସ୍ତବତାକୁ ମୁକାବିଲା କରିବାକୁ ସମର୍ଥ ହୋଇ ପାରିଛି । ପରିସ୍ଥିତି ଓ ପରିବେଶର ସ୍ୱୈରାଚାର ଶାସନରୁ ମୁକ୍ତ ହେବା ପାଇଁ ମନୁଷ୍ୟର ସାମଗ୍ରିକ ଏକତ୍ୱ ଓ ସଂଘର୍ଷର କଳାତ୍ମକ ଅଭିବ୍ୟକ୍ତି ନନ୍ଦକିଶୋରଙ୍କର ପଲ୍ଲୀ କବିତା ଓ ଅନ୍ୟାନ୍ୟ ରଚନାରେ ବେଶ୍ ପରିସ୍ଫୁଟ । ପଲ୍ଲୀ ଜୀବନର ସ୍ୱାଭାବିକ ଦୃଶ୍ୟ ବର୍ଣ୍ଣନା ଭିତରେ ମାନବିକ ଚେତନାର ଉତ୍ତରଣ ଓ ମୁକ୍ତିକାମୀ ଜନତା ପାଇଁ ଏକତ୍ୱର ଆହ୍ୱାନ ନନ୍ଦକିଶୋରଙ୍କ ସୃଷ୍ଟିକଳାର ସିଦ୍ଧି ଓ ବୈଶିଷ୍ଟ୍ୟ । □

# ଉଡ଼ିଗଲେ ଗେଣ୍ଡାଳିଆ

## ◻ ପ୍ରଦୀପ କୁମାର ଧଳ

ନନ୍ଦକିଶୋର ଜାଣିଜାଣି ଏମିତି କାମ କେମିତି କଲେ ? ଆମ ଜେମାଦେଈଙ୍କ ପାଇଁ ଅଶି ବରଷର ବୁଢ଼ା ବରଟିଏ ଠିକ୍ କଲେ ତ କଲେ; ଶେଷକୁ ପୁଣି କୋଈଲି ପରି ତ୍ରିପଣ୍ଡ କଲା । କଥା ଅଛି ପରା : କନ୍ୟା ବରୟତେ ରୂପ । କନ୍ୟା ସବୁବେଳେ ରୂପକୁ ଗୁରୁତ୍ୱ ଦିଏ । ଇଏ ସତ କଥା । ଦେହର ସୌନ୍ଦର୍ଯ୍ୟ ବା ଅଙ୍ଗ ସୌନ୍ଦର୍ଯ୍ୟ ହିଁ ପ୍ରଥମେ ବ୍ୟକ୍ତିକୁ ଆକୃଷ୍ଟ କରେ । ତା' ପରେ ଅନ୍ତଃସୌନ୍ଦର୍ଯ୍ୟ । ଭିତର ସୌନ୍ଦର୍ଯ୍ୟ ବା ଅନ୍ତଃସୌନ୍ଦର୍ଯ୍ୟ; ଯାହାକୁ ଆମେ ବ୍ୟକ୍ତିର ଗୁଣଗତ ସୌନ୍ଦର୍ଯ୍ୟ ବୋଲି କହିଥାଉ, ତାହା ସାଧାରଣତଃ ଚିରନ୍ତନ ଏବଂ ଶାଶ୍ୱତ । ଅଙ୍ଗ ସୌନ୍ଦର୍ଯ୍ୟ କ୍ଷଣିକ । ତଥାପି ତା'ର ଲୋଭ ମଣିଷକୁ ଅଧିକ ଆକୃଷ୍ଟ କରେ । କାରଣ ମଣିଷ ବିଷୟବାସନା ପ୍ରିୟ । ଏଥିପାଇଁ ମଣିଷର ସବୁ ବିଷୟ ପ୍ରତି ଗୁରୁତ୍ୱ ଦେବା ଭିତରେ ନନ୍ଦକିଶୋର ଜେମାଦେଈଙ୍କ ପ୍ରତି ଏ ଅବିଚାର କଲେ କାହିଁକି ? ଏଥିପାଇଁ ନନ୍ଦକିଶୋରଙ୍କୁ ଦୋଷ ନ ଦେଇ ଜେମାଦେଈଙ୍କର ବାପା ମାଆଙ୍କୁ ଦୋଷ ଦେଲେ ଭଲ ହୁଅନ୍ତା । ଯେଉଁଥିପାଇଁ ନନ୍ଦକିଶୋରଙ୍କର କବି କଲମ ଲେଖିଗଲା :

> 'ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର
> ଜେମାଦେଈଙ୍କର ବର ଅଶି ବରଷର ।
> ଝାଡ଼ିଦେଇ ପର ଉଡ଼ିଗଲେ ଗେଣ୍ଡାଳିଆ
> ଜେମାଦେଈଙ୍କର ବର କୋଇଲି କାଳିଆ ।'

ବାପାମାଆ ଜାଣି ଜାଣି ଏ କାମ କେମିତି କରୁଥିଲେ ? ଜେମାଦେଈ ନିଶ୍ଚୟ ସୁନ୍ଦରୀ ହୋଇଥିବେ । ନଚେତ୍ କାନ୍ଦୁଛନ୍ତି କାହିଁକି ? ତାଙ୍କ ମନରେ ବିରକ୍ତି କାହିଁକି ? ମଣିଷ ଯେତେବେଳେ ତା'ର ଇଚ୍ଛାନୁଯାୟୀ ଜିନିଷ ପାଇନପାରେ, ସେତେବେଳେ କଷ୍ଟ ପାଏ । କାନ୍ଦେ ବା ହତାଶ ବୋଧ କରେ । ଏସବୁ ପାଇଁ ଭୁଲ କାହାର ? ମୁଁ କହିବି ନନ୍ଦକିଶୋରଙ୍କର । ନନ୍ଦକିଶୋର ଗାଆଁ

ମାଟିର କବି । ବଣୁଆ ନଈ, ଦଳୁଆ କଇଁଭରି ପୋଖରୀ, ସନ୍ତସନ୍ତିଆ ଗାଆଁଗୋହିରୀର କିଆବଣ ବାଟ, ଚଉଁରା ମୂଳର ସଂଜକୁ ଦେଖି ଗୀତ ଲେଖୁଥିବା କବି ଇଆଡ଼କୁ ଝୁଙ୍କିଲେ କାହିଁକି ? ଆଷା କବିତୁଣ୍ଡ.... ମେଣ୍ଢାମୁଣ୍ଡ । କବି ଯାହା ଭାବିଲା ଲେଖିଲା । ନନ୍ଦକିଶୋର ଲୁଗ ଭିତରେ ସବୁ ଠିକ୍ କରି ଦେଇଯାଇଛନ୍ତି । କେଉଁ ବଣମୂଳକରୁ ହଡାକି ଆଣିଛନ୍ତି ଏଇ ଲୋକକଥାଟି : ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଇ ପର । ଇଏ ଲୋକ ମାନଙ୍କର କଥା । ଅତି ନିପଟ ଗାଆଁବାଲା ଏଇ କଥା କହିଛନ୍ତି । ତାକୁ ଧରି ରଖିଛି ନନ୍ଦକିଶୋରଙ୍କ କାନ । ଇଏ କାନ ତ ଟେପ୍ ରେକର୍ଡର । ସାଂଗେ ସାଂଗେ ଗୀତ ଲେଖା ହେଲା । ଗେଣ୍ଡାଳିଆ ପର ଝାଡ଼ିଦେଲା ? ତା'ର କେତେ ସାହସ ! ତାଆ ଡେଣା ଆଜି କଟାଯିବ । ଯେମିତି ରାବଣ ଜଟାୟୁର ଡେଣା କାଟିଥିଲା । ଡେଣା ଥିଲେ ସିନା ପର ଝାଡ଼ିବ । ଜେମାଦେଈ କାନ୍ଦିବେ ?

ନା ଜେମାଦେଈ.. ତୁମକୁ କାନ୍ଦିବାକୁ ହିଁ ହେବ । ନନ୍ଦକିଶୋର କିଛି ଭୁଲ କରି ନାହାନ୍ତି । ଗେଣ୍ଡାଳିଆ ନିଶ୍ଚୟ ଡେଣା ଝାଡ଼ିବ । ଇଏ ସମୟ ସୁଅର କଥା । ସବୁ ଏଠି ବ୍ୟତିକ୍ରମ । ସମ୍ଭବ ଓ ଅସମ୍ଭବ ଭିତରେ ପାର୍ଥକ୍ୟ ବହୁତ କମ୍ । ତୁମେ ସୁନ୍ଦରୀ ହୋଇ ପାର ! ତଥାପି ସମୟ ଆଗରେ ମୁଣ୍ଡ ନୁଆଁଇବାକୁ ତୁମେ ବାଧ୍ୟ । କାରଣ ଦୁଃଖ ଯାହାର କପାଳରେ ଲେଖାଅଛି, ତାକୁ କିଏ ଲିଭେଇଦେବ ? ଭାଗ୍ୟକୁ ତୁମେ କ'ଣ ବଦଳେଇ ଦେଇପାରିବ ଜେମାଦେଈ ! ତୁମରି ବାପାମାଆ ପରା ତୁମର କପାଳ, ଭାଗ୍ୟ ଓ ଭବିଷ୍ୟତ ପାଇଁ ସୀମାରେଖା ଟାଣିଦେଇଗଲେ । ନଚେତ୍ କାହିଁକି କହିଥାନ୍ତେ ବାପାମାଆ ପୁଅ ଏକତ୍ର ମିଳମିଶି :

'ବାପା ବୋଇଲେ ଝିଅ ମୋର
 ବାର ବରଷର
ମାଆ ବୋଇଲେ ଝିଅ ମୋର
 କୋଠାକୁ ସୁନ୍ଦର ।
ଭାଇ ବୋଇଲେ ଭଉଣୀ ମୋର
 ଅତି ପାଶେ ଥାଉ

ମାଟିର କବି । ବଣୁଆ ନଈ, ଦଳୁଆ କଇଁଭରି ପୋଖରୀ, ସନ୍ତସନ୍ତିଆ ଗାଆଁଗୋହିରୀର କିଆବଣ ବାଟ, ଚଉଁରା ମୂଳର ସଂଜକୁ ଦେଖି ଗୀତ ଲେଖୁଥିବା କବି ଇଆଡ଼କୁ ଝୁଙ୍କିଲେ କାହିଁକି ? ଆଜ୍ଞା କବିତୁଣ.... ମେଣ୍ଢାମୁଣ୍ଡ । କବି ଯାହା ଭାବିଲା ଲେଖିଲା । ନନ୍ଦକିଶୋର ଭୁଲ ଭିତରେ ସବୁ ଠିକ୍ କରି ଦେଇଯାଇଛନ୍ତି । କେଉଁ ବଣମୂଳକରୁ ହଡାଳି ଆଣିଛନ୍ତି ଏଇ ଲୋକକଥାଟି : ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଇ ପର । ଇଏ ଲୋକ ମାନଙ୍କର କଥା । ଅତି ନିପଟ ଗାଆଁବାଲା ଏଇ କଥା କହିଛନ୍ତି । ତାକୁ ଧରି ରଖିଛି ନନ୍ଦକିଶୋରଙ୍କ କାନ । ଇଏ କାନ ତ ଟେପ୍ ରେକର୍ଡର । ସାଂଗେ ସାଂଗେ ଗୀତ ଲେଖା ହେଲା । ଗେଣ୍ଡାଳିଆ ପର ଝାଡ଼ିଦେଲା ? ତା'ର କେତେ ସାହସ ! ତାଆ ଡେଣା ଆଜି କଟାଯିବ । ଯେମିତି ରାବଣ ଜଟାୟୁର ଡେଣା କାଟିଥିଲା । ଡେଣା ଥିଲେ ସିନା ପର ଝାଡ଼ିବ । ଜେମାଦେଈ କାନ୍ଦିବେ ?

ନା ଜେମାଦେଈ.. ତୁମକୁ କାନ୍ଦିବାକୁ ହିଁ ହେବ । ନନ୍ଦକିଶୋର କିଛି ଭୁଲ କରି ନାହାନ୍ତି । ଗେଣ୍ଡାଳିଆ ନିଶ୍ଚୟ ଡେଣା ଝାଡ଼ିବ । ଇଏ ସମୟ ସୂଅର କଥା । ସବୁ ଏଠି ବ୍ୟତିକ୍ରମ । ସମ୍ଭବ ଓ ଅସମ୍ଭବ ଭିତରେ ପାର୍ଥକ୍ୟ ବହୁତ କମ୍ । ତୁମେ ସୁନ୍ଦରୀ ହୋଇ ପାର ! ତଥାପି ସମୟ ଆଗରେ ମୁଣ୍ଡ ନୁଆଁଇବାକୁ ତୁମେ ବାଧ୍ୟ । କାରଣ ଦୁଃଖ ଯାହାର କପାଳରେ ଲେଖାଅଛି, ତାକୁ କିଏ ଲିଭେଇଦେବ ? ଭାଗ୍ୟକୁ ତୁମେ କ'ଣ ବଦଳେଇ ଦେଇପାରିବ ଜେମାଦେଈ ! ତୁମରି ବାପାମାଆ ପରା ତୁମର କପାଳ, ଭାଗ୍ୟ ଓ ଭବିଷ୍ୟତ ପାଇଁ ସୀମାରେଖା ଟାଣିଦେଇଗଲେ । ନଚେତ୍ କାହିଁକି କହିଥାନ୍ତେ ବାପାମାଆ ପୁଅ ଏକତ୍ର ମିଳମିଶି :

'ବାପା ବୋଇଲେ ଝିଅ ମୋର
ବାର ବରଷର
ମାଆ ବୋଇଲେ ଝିଅ ମୋର
କୋଠାକୁ ସୁନ୍ଦର ।
ଭାଇ ବୋଇଲେ ଭଉଣୀ ମୋର
ଅତି ପାଶେ ଥାଉ

ହିଂସିକି ଭାଉଜ କହେ

ଦୂରଦେଶେ ଯାଉ ।'

ଏ ସମସ୍ତଙ୍କର ପଦକ୍ଷେପ ଓ ଚିନ୍ତା ଭିତରେ, ମଙ୍ଗଳମୟ ଆକୃତି ଭିତରେ ତଥାପି ଜେମାଦେଈ କାନ୍ଦୁଛନ୍ତି । କେଉଁ ବାପା, ମାଆ, ଭାଇ ଓ ଭାଉଜ ଚାହାନ୍ତିନାହିଁ ତାଙ୍କର ନିଜର ମଣିଷଟା ସୁଖ ଶାନ୍ତିରେ ରହୁ ? ସମସ୍ତେ ଚାହିଁବା ଭିତରେ ଯଦି ଉପର ବାଲା ନଚାହିଁଲା, ତେବେ ସବୁ ସରିଗଲା ଯେ ! ଭାଉଜ କଥାଟିକେ ଭାବନ୍ତୁ । ଭାଉଜ ହିଂସିକି । ସେ ଚାହେଁ ତା ନଣନ୍ଦ ଦୂରଦେଶକୁ ଯାଉ । ପାଖରେ ଥିଲେ ସିନା ବାପ ଘରକୁ ଆସିବ ! ଭାଇଠାରୁ ସ୍ନେହ ଦାବୀ କରିବ । ଯେଉଁ ସ୍ନେହ ଭାଉଜ ପାଇବାରୁ ବଞ୍ଚିତ ହେବ । ପ୍ରତ୍ୟେକ ସ୍ତ୍ରୀ ଚାହାନ୍ତି ତାଙ୍କ ସ୍ୱାମୀ ତାଙ୍କର ଗୋଟାପଣେ ହୋଇ ରହୁ । ସବୁ ସ୍ନେହ, ପ୍ରେମ ଓ ମମତା ତା'ଠି ଅଜାଡ଼ିପଡୁ । କିନ୍ତୁ ଜେମାଦେଈର ବାରବର୍ଷ । ବୁଢ଼ାବରର ବୟସ ଅଶି ବର୍ଷ । କେତେ ଅସଂଗତ କଥା । ଆଜ୍ଞା ଇଏ ମିଛ କଥା । ମିଛକଥାର ଫାଶ ବସେଇ ଗେଣ୍ଡାଳିଆର ପର ଭିତରେ ଜେମାଦେଈଙ୍କୁ ପଟେଇବାକୁ ଚାହାନ୍ତି ନନ୍ଦକିଶୋର । ଇଏ କେବେ ସମ୍ଭବ ନୁହେଁ; ବାରବର୍ଷର ଝିଅକୁ ଅଶିବର୍ଷର ବୁଢ଼ାବର ! କଣ କରାଯିବ ? ଇଏ ସବୁ କଥାର ନଥା ମାତ୍ର । କଥାରେ ସର ପକାଇବାରେ କବି ମାନେ ଓସ୍ତାଦ୍ ।

ତଥାପି କବିତା ଭିତରକୁ ପଶିଗଲେ ମୁଣ୍ଡଟା ଗୋଳମାଳ ହୋଇଯାଏ । ଅସମ୍ଭବକୁ ଟିକେ ସମ୍ଭବ ରୂପଦେଇ, ସମୟ ଆଗରେ ଟିକେ ମୁଣ୍ଡ ନୁଆଁଇ ଭାବିଲେ ଦେହଟା ତାତିଯାଏ, କଲିଜା ଥରିଉଠେ । ସତେ ଯେମିତି ଏବେବି ଜେମାଦେଇ ଠପ୍ ଠପ୍ ଲୁହ ନିଗାଡ଼ି କାନ୍ଦୁଛି ! ଗେଣ୍ଡାଳିଆ ଡେଣାଝାଡ଼ି ଉଡ଼ିଯାଉଛି ! ସମସ୍ତେ ପ୍ରଶ୍ନ କରୁଛନ୍ତି : ଗେଣ୍ଡାଳିଆ କୁଆଡ଼େ ଉଡ଼ିଗଲା ? ଜେମାଦେଈଙ୍କର କାନ୍ଦ କେବେ ବନ୍ଦ ହେବ ? ଏ ଭୁଲ୍ ନନ୍ଦକିଶୋର କାହିଁକି ଜେମାଦେଈଙ୍କ ପ୍ରତି କରିବସିଲେ ? ଏଥିପାଇଁ ଦାୟୀ କିଏ ? □

# ପୃଷ୍ଠଲେଖ

ଓଡ଼ିଆ ସାହିତ୍ୟର ଇତିହାସରେ ପଲ୍ଲୀକବି ନନ୍ଦକିଶୋର ଏକ ବ୍ୟତିକ୍ରମ । ବ୍ୟତିକ୍ରମ ଏଇଥିପାଇଁ ଯେ ଇଂରେଜମାନଙ୍କର ପ୍ରଭାବ ଫଳରେ 'ଆଧୁନିକତା' ଯେତେବେଳେ କ୍ରମଶଃ ସ୍ରଷ୍ଟାମାନଙ୍କର ଭାବଜଗତ ଓ ଆଙ୍ଗିକତାକୁ ପରୋକ୍ଷଭାବରେ ଅନୁପ୍ରାଣିତ କରୁଥିଲା, ସେତିକିବେଳେ ନନ୍ଦକିଶୋର ଗ୍ରାମ୍ୟଜୀବନର ସାହିତ୍ୟସ୍ରଷ୍ଟା ଭାବରେ ନେତୃତ୍ୱ ନେଇଥିଲେ । ତାହାପୁଣି ଜଣେ ସରକାରୀ କର୍ମଚାରୀ ଥାଇ । ବୋଧହୁଏ ସେ କାଳରେ ସରକାରୀ ଚାକିରୀରେ ଥାଇ ସାହିତ୍ୟିକ ତା'ର 'ସୃଷ୍ଟିଧର୍ମର' 'ସ୍ୱରାଜ' ରକ୍ଷା କରିପାରୁଥିଲେ । ତେଣୁ 'ନନ୍ଦକିଶୋର' ଏହି ସ୍ୱାଧୀନତା ରକ୍ଷା କରିବା କ୍ଷେତ୍ରରେ ପଛଘୁଞ୍ଚା ଦେଇ ନଥିଲେ ।

କାଳକ୍ରମେ ଯେତେବେଳେ ସମାଲୋଚକମାନେ ନନ୍ଦକିଶୋରଙ୍କ ସୃଷ୍ଟିର କଳନା କରିବାକୁ ଆରମ୍ଭକଲେ, ସେତେବେଳେ ଏହାର ସୀମା ସରହଦ ପୁଣି ସେଇ 'ପାଠ୍ୟପୁସ୍ତକ ର' ଆବଶ୍ୟକତା ଭିତ୍ତିକ ପରିଧି ଭିତରେ ବନ୍ଦୀ ହୋଇଗଲା । ତେଣୁ ଶର୍ମିଷ୍ଠା, କନକଲତା ବା ନାନାବାୟାଗୀତର ଆଲୋଚନା ବଢ଼ି ବଢ଼ି ଚାଲିଲା, କିନ୍ତୁ ତାଙ୍କର 'ସାମଗ୍ରିକ ସୃଷ୍ଟି'ର ବଳୟକୁ ଉନ୍ମୋଚନ କରିବା ଦିଗରେ ଆନୁଷ୍ଠାନିକ ବା ସମାଲୋଚକୀୟ ଦିଗନ୍ତ ବିସ୍ତୃତି ଲାଭ କରି ପାରିଲା ନାହିଁ । ଏପରିକି ତାଙ୍କର ସମସ୍ତ ରଚନା ଏବେ ବି ଏକତ୍ର ପ୍ରକାଶିତ ହୋଇନାହିଁ । ଏ ପର୍ଯ୍ୟନ୍ତ 'ନନ୍ଦକିଶୋର ଗ୍ରନ୍ଥାବଳୀ' ନାମରେ ୨/୩ ଥର ଯେଉଁ ଗ୍ରନ୍ଥ ପାଠକୀୟ ବଜାରରେ ଉପଲବ୍ଧ, ତାହା ତାଙ୍କର ସମଗ୍ର ରଚନାର ଅର୍ଦ୍ଧାଂଶ ମଧ୍ୟ ନୁହେଁ । ଏହା ବ୍ୟତୀତ କୌଣସି ଏକ ସ୍ରଷ୍ଟାଙ୍କର 'ସମସ୍ତ ରଚନାକୁ' ଏକ ବୈଜ୍ଞାନିକ ଭିତ୍ତିଭୂମିରେ ସଂପାଦନ କରିବାର ବ୍ୟବସ୍ଥା ଏଯାବତ୍ ଓଡ଼ିଶାରେ ହୋଇନାହିଁ । ଓଡ଼ିଆରେ 'ଗ୍ରନ୍ଥାବଳୀ' କହିଲେ, କେବଳ ଯେନତେନ ପ୍ରକାରେଣ ଏକ ସଂକଳନକୁ ହିଁ ବୁଝାଇ ଆସିଛି । ଫଳରେ 'ଓଡ଼ିଆ ସାହିତ୍ୟର ଇତିହାସ' ରଚନା ଏବେବି ଅସଂପୂର୍ଣ୍ଣ ରହିଛି ।

ଏହି ପରିପ୍ରେକ୍ଷୀରେ ''ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍''ର ସୃଷ୍ଟିହେଲା ୧୯୯୨ ମସିହାରେ । ଏହି ସଂସ୍ଥାର ସଭାପତିଭାବରେ ଛ'ବର୍ଷ ଭିତରେ ଓଡ଼ିଶାର ଛ'ଜଣ ନନ୍ଦକିଶୋର ଆଲୋଚକଙ୍କୁ ଫାଉଣ୍ଡେସନ୍ ପକ୍ଷରୁ 'ପଲ୍ଲୀକବି ନନ୍ଦକିଶୋର ସମ୍ମାନ' ଦିଆ ସରିଛି । ସେମାନେ ହେଲେ : ନଟବର ସାମନ୍ତରାୟ, କୁଂଜବିହାରୀ ଦାଶ, ଅସିତ କବି, ପଠାଣି ପଟ୍ଟନାୟକ,

ନବକିଶୋର ଦାସ ଓ ମଧୁସୂଦନ ପତି । ଏମାନଙ୍କ ବ୍ୟତୀତ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ଵାଜ)ଙ୍କ ସମେତ ୧୬ତ ଚନ୍ଦ୍ର ଶତପଥୀ, କୃଷ୍ଣଚରଣ ବେହେରା, ଦେବେନ୍ଦ୍ର କୁମାର ଦାଶ, ବୀରେନ୍ଦ୍ର ନାୟକ ଓ ଯୁଗଳ କିଶୋର ଚାନ୍ଦ 'ସ୍ମାରକୀ ବକ୍ତୃତା ମାଳା' ପ୍ରଦାନ କରିଛନ୍ତି ।

ଏହି ଛ'ବର୍ଷ ଭିତରେ ଦେବେନ୍ଦ୍ର କୁମାର ଦାଶଙ୍କର ଗୋଟିଏ ଫୁଲ ଫୁଟିବାର କାହାଣୀ (ମୟୂର ପବ୍ଲିକେସନ୍ସ), ପଲ୍ଲୀକବି ନନ୍ଦକିଶୋର ସ୍ମାରକୀ ବକ୍ତୃତା (ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍), ଅଭି ଭାଷଣ (ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍) ପୁସ୍ତକମାନ ପ୍ରକାଶ ପାଇଛି । ସାରଳା ସାହିତ୍ୟ ସଂସଦ ପକ୍ଷରୁ ନନ୍ଦକିଶୋର ସାହିତ୍ୟ ଚିନ୍ତନ ପ୍ରକାଶ ପାଇଛି ।

'ପ୍ରଗତିବାଦୀ' ପ୍ରତ୍ୟେକବର୍ଷ ଡିସେମ୍ବର ୨୨ରେ ଏକ 'ପଲ୍ଲୀକବି ବିଶେଷାଙ୍କ' ପ୍ରକାଶ କରି ଆସୁଥିବାରୁ ପଲ୍ଲୀକବିଙ୍କ ସଂପର୍କରେ ନିୟମିତ ଚର୍ଚ୍ଚାର ଏକ ମୂଳଦୁଆ ପଡ଼ି ପାରିଛି । କିନ୍ତୁ ଏ ଦିଗରେ ଯେତିକି ଅଗ୍ରସର ହେବା କଥା ତାହା ହୋଇପାରି ନାହିଁ । ଏବେ 'ପଲ୍ଲୀକବି ନନ୍ଦକିଶୋର ରଚନା ସମଗ୍ର' ଦୁଇଖଣ୍ଡରେ ପ୍ରକାଶ ପାଇବାପାଇଁ ପାଣ୍ଡୁଲିପି ପ୍ରସ୍ତୁତ ହୋଇସାରିଛି । ମୋ ତତ୍ତ୍ଵାବଧାନରେ ଦେବେନ୍ଦ୍ର କୁମାର ଦାଶଙ୍କ ସଂପାଦନାରେ ଏ କାର୍ଯ୍ୟ ସଂପନ୍ନ କରିବାକୁ ପ୍ରାୟ ତିନିବର୍ଷରୁ ଉର୍ଦ୍ଧ୍ଵ ସମୟ ବିତିଛି । ଏବେବି ନନ୍ଦକିଶୋରଙ୍କର ବଂଗଳାରୁ ଅନୂଦିତ 'ଭାରତ ଇତିହାସ' ପୁସ୍ତକ ଦୁଷ୍ପ୍ରାପ୍ୟ । ତେଣୁ ତାହା ରଚନା ସମଗ୍ର ଅନ୍ତର୍ଭୁକ୍ତ ହୋଇପାରେ ନାହିଁ ।

ପଲ୍ଲୀକବି ନନ୍ଦକିଶୋରଙ୍କୁ ମୁଖ୍ୟତଃ ଜଣେ କବି ଓ ପଲ୍ଲୀକବି ଭାବରେ ଆମେ ବିଚାର କରି ଆସିଛୁ । କିନ୍ତୁ ଏବେ ରଚନା ସମଗ୍ର ପ୍ରକାଶ ପାଇଲେ ଆମେ ଦେଖି ପାରିବା ଯେ ଏହି ରଚନା ସମଗ୍ରର ଗୋଟିଏ ଭାଗ ( ପ୍ରାୟ ୬୦୦ପୃଷ୍ଠାରୁ ଉର୍ଦ୍ଧ୍ଵ) କେବଳ ଗଦ୍ୟରଚନା । ତେଣୁ ଯେଉଁମାନେ 'ଓଡ଼ିଆ ସାହିତ୍ୟର ଇତିହାସ'ର ପୁନର୍ଲିଖନ କରିବେ, ସେମାନେ ପଲ୍ଲୀକବି ନନ୍ଦକିଶୋରଙ୍କୁ ପୁଣିଥରେ ବିଚାରକୁ ନେଲାବେଳେ, ତାଙ୍କୁ ଜଣେ ଅନନ୍ୟ ସଂଗ୍ରାମୀ ସ୍ରଷ୍ଟା ଭାବରେ ଉପସ୍ଥାପିତ କରିବାକୁ 'ପ୍ରାଥମିକ ସମ୍ବଳ' ଏହି 'ରଚନା ସମଗ୍ର' ରେ ରହିଛି । ଏଥିପାଇଁ ଦେବେନ୍ଦ୍ର କୁମାର ଦାଶଙ୍କର ନିଷ୍ଠା, ବୈଜ୍ଞାନିକ ମନୋଭାବ ଓ ଗବେଷକୀୟ ଶ୍ରଦ୍ଧାକୁ ମୁଁ ପ୍ରଶଂସା କରିବାକୁ କୁଣ୍ଠାବୋଧ କରୁନାହିଁ ।

ମୋଟଉପରେ ଏହି ଛ'ବର୍ଷର ଅଭିଜ୍ଞତା, ଅନୁଭୂତି, ବାଧକତା, ପ୍ରତିବନ୍ଧକ ଆଦିକୁ ସବୁ ମିଳେଇ ଦେଖିଲେ ସମାଲୋଚକର ଆଦ୍ୟ କୃତିତ୍ଵ ନଟବର ସାମନ୍ତରାୟଙ୍କର ପ୍ରାପ୍ୟ । ତାଙ୍କ ରଚିତ ନନ୍ଦକିଶୋର ସାହିତ୍ୟ ସମୀକ୍ଷା, ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ଵାର ପ୍ରକାଶିତ ହୋଇଥିଲା ୧୯୬୪ରେ । ଏବେ ପୁଣି ସେହି ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ଵାରା ପ୍ରସନ୍ନ କୁମାର

ମହାନ୍ତିଙ୍କ ସଂପାଦନାରେ ପଲ୍ଲୀକବି **ସୃଷ୍ଟି ପରିଧି** (୧୯୯୭) ପ୍ରକାଶ ପାଉଛି- ପ୍ରାୟ ୩୩ ବର୍ଷ ପରେ । ଏହି ଦୀର୍ଘକାଳ ଭିତରେ ନନ୍ଦକିଶୋରଙ୍କ ଅନାଲୋଚିତ ପ୍ରତିଭା ଯେପରି ବିଚାର୍ଯ୍ୟ ହେବା କଥା ତାହା ହୋଇ ନାହିଁ । ଏ ଦିଗରେ ବିଶ୍ୱବିଦ୍ୟାଳୟ ମାନେ ଯେଉଁ ନେତୃତ୍ୱ ନେବାକଥା ନେଇପାରି ନାହାନ୍ତି । ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍ ସହାୟତାରେ **ପଲ୍ଲୀକବି ସୃଷ୍ଟିପରିଧି** ପ୍ରକାଶ ପାଉଥିଲେ ବି ଏ ଦିଗରେ ଅନ୍ୟାନ୍ୟ ସାରସ୍ୱତ ଅନୁଷ୍ଠାନ ମାନେ ଯେଉଁଳି ଉଦ୍ଦୀପନା ଦେଖାଇବାର କଥା ଦେଖାଇପାରି ନାହାନ୍ତି ।

ଏବେ ସାହିତ୍ୟ ଜଗତରୁ ଅବସର ନେଉଥିବାରୁ, ଭବିଷ୍ୟତର ଆଲୋଚକ ମାନେ ଓ 'ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ' ଏଦିଗରେ କରି ଆସିଥିବା ପ୍ରଚେଷ୍ଟାକୁ ଅଧିକ ଦୃଢ଼ କରିବେ ବୋଲି ଅଶା । କାରଣ ମୋ ବିଚାରରେ ମାତ୍ର ଆଠବର୍ଷର ସାରସ୍ୱତ ସାଧନା ଭିତରେ ପଲ୍ଲୀକବି ନନ୍ଦକିଶୋରଙ୍କର ସାଧନା ପ୍ରସୂତ 'ରଚନା ସମଗ୍ରକୁ' ଦୃଷ୍ଟିପାତ କଲେ, କହିବାକୁ ମନେ ହେଉଛି ଯେ 'ଓଡ଼ିଆ ସାହିତ୍ୟର ଇତିହାସ'ରେ ନନ୍ଦକିଶୋର ଏକ ସାର୍ଥକ ବ୍ୟତିକ୍ରମ । ଏହାହିଁ ଯୁବପୀଢ଼ିକୁ ପ୍ରୋତ୍ସାହିତ କରୁ ବୋଲି କାମନା କରିବା ମୋ ପକ୍ଷରେ ଏକ ସ୍ୱାଭାବିକ ଅଭିଳାଷ । ଜୟ ସର୍ବୋଦୟ ।।

**ଆଚାର୍ଯ୍ୟ ଭାବାନନ୍ଦ**
ସଭାପତି :
ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍,
ଭୁବନେଶ୍ୱର ।

# ନନ୍ଦକିଶୋର ସାହିତ୍ୟ : ସହାୟକ ଗ୍ରନ୍ଥସୂଚୀ


୧. ମାୟାଧର ମାନସିଂହ - ''ପଲ୍ଲୀକବି ନନ୍ଦକିଶୋର'' : କବି ଓ କବିତା, ଭାରତୀ ବିହାର, କଟକ, ୧୯୪୮

୨. ନନ୍ଦକିଶୋର ଗ୍ରନ୍ଥାବଳୀ - ପ୍ରଥମ ସଂସ୍କରଣ, ୧୯୫୫

୩. ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) -''ପଲ୍ଲୀକବି ନନ୍ଦକିଶୋର'' : ସୃଷ୍ଟି ଓ ସମୀକ୍ଷା, ଦାସ ବ୍ରଦର୍ସ, କଟକ ଓ ବ୍ରହ୍ମପୁର, ୧୯୫୬

୪. ଅସିତ କବି - ଓଡ଼ିଆ ସାହିତ୍ୟରେ ନନ୍ଦକିଶୋର, ୧୯୫୬

୫. ନୀଳକଣ୍ଠ ଦାସ - ''ନନ୍ଦକିଶୋରଙ୍କ ମୌଳିକତା'' : ଓଡ଼ିଆ ଭାଷା ଓ ସାହିତ୍ୟ, ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ, ୧୯୫୮

୬. ନଟବର ସାମନ୍ତରାୟ - ନନ୍ଦକିଶୋର ସାହିତ୍ୟ ସମୀକ୍ଷା, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ୧୯୬୪

୭. ଗଂଗାଧର ବଳ - ''ବର୍ଷାର କବି ନନ୍ଦକିଶୋର'' : ସାହିତ୍ୟ ଆଲୋଚନା, ଗ୍ରନ୍ଥମନ୍ଦିର, କଟକ, ୧୯୬୫

୮. କୁଂଜବିହାରୀ ଦାଶ - ''ଗଣକବି ନନ୍ଦକିଶୋର'' : ସାହିତ୍ୟିକ, ଗ୍ରନ୍ଥମନ୍ଦିର, କଟକ, ୧୯୬୬

୯. ସୁରେନ୍ଦ୍ର ମହାନ୍ତି - ''ଆଦ୍ୟ ବିଂଶ ଶତକର କାବ୍ୟରୀତି ଓ ପଲ୍ଲୀ କବି ନନ୍ଦକିଶୋର'' : ସୁରେନ୍ଦ୍ର ବିଚିତ୍ରା, ଜଗନ୍ନାଥ ରଥ, କଟକ, ୧୯୬୭

୧୦. ଜାନକୀ ବଲ୍ଲଭ ମହାନ୍ତି - ''ପଲ୍ଲୀକବି ନନ୍ଦକିଶୋର'' : ନବଯୁଗର କବି ଓ କାବ୍ୟଧାରା, ଗ୍ରନ୍ଥମନ୍ଦିର, କଟକ, ୧୯୭୧

୧୧. ପଲ୍ଲୀକବି ନନ୍ଦକିଶୋର ସ୍ମାରକ ଗ୍ରନ୍ଥ - ଜେ. ମହାପାତ୍ର ଏଣ୍ଡ କୋ., କଟକ, ୧୯୭୬

୧୨. ନଟବର ସାମନ୍ତରାୟ - ''ମେଘ ବରଷିଲା ଟପର ଟପର'' : ଓଡ଼ିଆ ସାହିତ୍ୟରେ କାଳ ଓ କଳା, ପ୍ରକାଶିକା : ଶ୍ରୀମତି ଗଂଗାବାଇ ସାମନ୍ତରାୟ, ଭୁବନେଶ୍ୱର, ୧୯୭୭

୧୩. ନଟବର ସାମନ୍ତରାୟ - ''ଓଡ଼ିଆ ସାହିତ୍ୟରେ ପଲ୍ଲୀକବି ନନ୍ଦକିଶୋର'' : ଓଡ଼ିଆ ସାହିତ୍ୟର ସମୀକ୍ଷା ଓ ସଂଗ୍ରହ, ପ୍ରକାଶିକା : ଶ୍ରୀମତି ଗଂଗାବାଇ ସାମନ୍ତରାୟ, ଭୁବନେଶ୍ୱର, ୧୯୭୭

୧୪. ପଠାଣି ପଟ୍ଟନାୟକ - ''ପଲ୍ଲୀକବି ନନ୍ଦକିଶୋର'' : ସାହିତ୍ୟ ଓ ସମୀକ୍ଷା, ବିଦ୍ୟାପୁରୀ, କଟକ, ୧୯୭୮

୧୫. ନରେନ୍ଦ୍ରନାଥ ମିଶ୍ର - ''ନନ୍ଦକିଶୋର ବଳ '': ଆଧୁନିକ ଓଡ଼ିଆ କାବ୍ୟଧାରା, ବିଶ୍ୱଭାରତୀ, ଶାନ୍ତି ନିକେତନନ, ୧୯୭୮

୧୬. ମଧୁସୂଦନ ପତି - ''ପଲ୍ଲୀକବି ନନ୍ଦକିଶୋର ଓ କାକବାରତା - ଏକ ଅଧ୍ୟୟନ'': ଅନୁଶୀଳନ, ଅଗ୍ରଦୂତ, କଟକ, ୧୯୭୯

୧୭. ଶରତଚନ୍ଦ୍ର ନାୟକ - ''ଉତ୍କଳୀୟ ନାରୀସମାଜ ଓ ନନ୍ଦକିଶୋର'' : ସ୍ୱର ଓ ସ୍ୱରୂପ : ସମାଲୋଚନା, ତାରାତାରିଣୀ ବୁକ୍‌ଷ୍ଟୋର, ବ୍ରହ୍ମପୁର, ୧୯୮୦

୧୮. ଦାଶରଥି ଦାସ - ''ବର୍ଷାର କବି ନନ୍ଦକିଶୋର'' : ବିବିଧ ସମାଲୋଚନା, ଅଗ୍ରଦୂତ, କଟକ, ୧୯୮୧

୧୯. ପ୍ରତିଭା ଶତପଥି - ''ରୋମାଣ୍ଟିକ୍ କବି ନନ୍ଦ କିଶୋର'' : କଳ୍ପନାର ଅଭିଷେକ, ଓଡ଼ିଶା ବୁକ୍‌ଷ୍ଟୋର୍, କଟକ, ୧୯୮୨

୨୦. ଜଗବଂଧୁ ସାହୁ - ''ନନ୍ଦକିଶୋରଙ୍କ କବିତାରେ ସମାଜ ଓ ଜୀବନ ଦର୍ଶନ'' : ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା, ସଂକଳକ : କୁଂଜବିହାରୀ ଦାଶ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ୧୯୮୬

୨୧. ପଲ୍ଲୀକବି ନନ୍ଦକିଶୋର ମୂଲ୍ୟାୟନ - ସଂପାଦକ : ଭାବଗ୍ରାହୀ ମିଶ୍ର, ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍, ଭୁବନେଶ୍ୱର, ୧୯୯୩

୨୨. ଦେବେନ୍ଦ୍ର କୁମାର ଦାଶ - ଗୋଟିଏ ଫୁଲ ଫୁଟିବାର କାହାଣୀ : ମୟୂର ପବ୍ଲିକେସନ୍ସ, ଭୁବନେଶ୍ୱର, ୧୯୯୩

୨୩. କୃଷ୍ଣଚରଣ ବେହେରା - ପଲ୍ଲୀକବି ନନ୍ଦକିଶୋର ସ୍ମାରକୀ ବକ୍ତୃତା : ପଲ୍ଲୀକବି ନନ୍ଦକିଶୋର ଫାଉଣ୍ଡେସନ୍, ଭୁବନେଶ୍ୱର, ୧୯୯୩




# ପରିଶିଷ୍ଟ

## ବଂଶଲତା (କଳ୍ପିତ)




(ପଲ୍ଲୀ କବି ନନ୍ଦକିଶୋର ବଳଙ୍କର ବୟସ ଯେତେବେଳେ ମାତ୍ର ୧ବର୍ଷ ୨ମାସ, ସେତେବେଳେ ତାଙ୍କ ଜନ୍ମଦାତ୍ରୀ ମାତା ହୀରାଦେଈ ଇହଧାମ ତ୍ୟାଗ କରିଥିଲେ । ପିତା ଭଜନାନନ୍ଦଙ୍କ ଭଉଣୀ ଜାନକୀ ଦେଈ କୁସୁପୁରୁ ଗ୍ରାମ ସଂଲଗ୍ନ ନାନପୁର ଗ୍ରାମର ଶ୍ରୀ ସତ୍ୟାନନ୍ଦ ବଳଙ୍କୁ ବିବାହ କରିଥିଲେ । ବିବାହର ବର୍ଷକ ମଧରେ ସଦାନନ୍ଦଙ୍କର ମୃତ୍ୟୁ ହେବାରୁ ଜାନକୀ କଠୋର ବୈଧବ୍ୟ ଜୀବନ ଯାପନ କରୁଥିଲେ । ଏଭଳି ପରିସ୍ଥିତିରେ ଭଜନାନନ୍ଦ ଭଉଣୀ ଜାନକୀଙ୍କ କୋଳରେ ରସାନନ୍ଦଙ୍କୁ ଅର୍ପଣ କରିଥିଲେ । ଜାନକୀ ପିତୃଦତ୍ତ 'ରସାନନ୍ଦ' ନାମ ପରିବର୍ତ୍ତନ କରି ଶିଶୁଟିର ନୂଆନାମ 'ନନ୍ଦକିଶୋର' ରଖିଥିଲେ ଓ ଆପଣା ଗର୍ଭଜାତ ସନ୍ତାନ ପରି ସ୍ନେହ ଦେଇ ଲାଳନ ପାଳନ କରିଥିଲେ ।)


ବଂଶଲତା (ପାଳିତ)
ରାଧାକାନ୍ତ ବଳ
ପଦାମୁକ୍ତ ବଳ
ଭିକାରୀ ବଳ
ସ୍ତ୍ରୀ : ଲକ୍ଷ୍ମୀ
ଦୁର୍ଯ୍ୟୋଧନ ବଳ
ସ୍ତ୍ରୀ : ପିତେଇ
କରୁଣାକର ବଳ
ଗୁରୁଚରଣ ବଳ
ସଦାନନ୍ଦ ବଳ
ସ୍ତ୍ରୀ : ଜାନକୀ (ନନ୍ଦକିଶୋରଙ୍କ ପିଉସୀ)
ନନ୍ଦକିଶୋର ବଳ (ପୋଷ୍ୟପୁତ୍ର)
ସ୍ତ୍ରୀ : କୋକିଳ ଦେଇ
ପାର୍ବତୀ
କୃଷ୍ଣକିଶୋର
ସରସ୍ୱତୀ
ହେମନ୍ତକିଶୋର
ବସନ୍ତ ଶୋର
ଲକ୍ଷ୍ମୀ

# ନନ୍ଦକିଶୋର ବଳ : ସଂକ୍ଷିପ୍ତ ଜୀବନ ପଞ୍ଜି

- ୧୮୭୫ : କଟକ ଜିଲ୍ଲାର କୁସୁପୁର ଗ୍ରାମରେ ଡିସେମ୍ବର ୨୨ ତାରିଖ ବୁଧବାର ଦିନ ଜନ୍ମ । ପିତା ଭଜନାନନ୍ଦ ଜେନା ଓ ମାତା ହିରଣ୍ମୟୀଙ୍କର ଚତୁର୍ଥ ପୁତ୍ର । ପିଲାଦିନର ନାମ ରସାନନ୍ଦ ।
- ୧୮୭୭ : ଫେବୃଆରି ମାସରେ ମାତା ହିରଣ୍ମୟୀଙ୍କ ପରଲୋକ । ବିଧବା ପିଉସୀ ଜାନକୀ ଦେଈଙ୍କ ଦ୍ୱାରା ନନ୍ଦକିଶୋର ପୋଷ୍ୟପୁତ୍ର ଭାବେ ଗୃହୀତ । ଫଳରେ ନାନପୁରର 'ସଦାନନ୍ଦ ବଳଙ୍କ ପୁତ୍ର ନନ୍ଦକିଶୋର ବଳ' ଭାବେ ପରବର୍ତ୍ତୀ କାଳରେ ପରିଚିତ ।
- ୧୮୮୦ : ପାରଂପରିକ ଚାଟଶାଳୀରେ ଅନନ୍ତ ମିଶ୍ରଙ୍କ ଠାରୁ ଶିକ୍ଷା ଲାଭ, ୧୮୮୪ ମସିହା ପର୍ଯ୍ୟନ୍ତ ।
- ୧୮୮୪ : ସ୍ଥାନୀୟ ଜମିଦାରଙ୍କ କଚେରିରେ ସିରସ୍ତା କାର୍ଯ୍ୟରେ ଏକବର୍ଷ ତାଲିମ ।
- ୧୮୮୬ : କୁସୁପୁରରେ ଏକ ପ୍ରାଥମିକ ବିଦ୍ୟାଳୟର ସ୍ଥାପନ ଓ ଏଠାରେ ନନ୍ଦକିଶୋରଙ୍କ ଶିକ୍ଷାଲାଭ । ଡବଲ ପ୍ରମୋସନ ଲାଭକରି ୧୮୮୯ରେ ଉଚ୍ଚ ପାଥମିକ ପରୀକ୍ଷା ଦେବା ଲାଗି ମନୋନୀତ ।
- ୧୮୮୯ : ଉ.ପ୍ରା. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ଓ ବୃତ୍ତିଲାଭ । ଏହି ସମୟରେ ନନ୍ଦକିଶୋରଙ୍କ କବିତ୍ୱ ଶକ୍ତିର ଉନ୍ମେଷ । ମାଇନର ପଢ଼ିବା ଲାଗି କଟକ 'ଟାଉନ୍ ଭିକ୍‌ଟୋରିଆ ସ୍କୁଲ'ରେ ଯୋଗଦାନ ।
- ୧୮୯୧ : ପ୍ରଥମଶ୍ରେଣୀରେ ମାଇନର ପାସ୍ ଓ ବୃତ୍ତିଲାଭ । ଉଚ୍ଚଇଂରାଜୀ ଶିକ୍ଷା ଲାଭ ପାଇଁ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଯୋଗଦାନ ।
- ୧୮୯୩ : ବ୍ରାହ୍ମଧର୍ମରେ ଦୀକ୍ଷିତ ହେବାଲାଗି ଇଚ୍ଛାପ୍ରକାଶ । ଏହା ଜାଣିପାରି ଅଭିଭାବକମାନେ କଲେଜିଏଟ୍ ସ୍କୁଲରୁ ନେଇଆସି ତାଙ୍କୁ ତା ୬/୧/୯୩ ରିଖରରେ କେନ୍ଦ୍ରାପଡ଼ା ହାଇସ୍କୁଲରେ ଭର୍ତ୍ତି କରାଇଲେ ।
- ୧୮୯୫ : ଓଡ଼ିଶାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ । ଭକ୍ତକବି ମଧୁସୂଦନଙ୍କ ଉଦ୍ୟମରେ ଆରମ୍ଭ ହୋଇଥିବା 'ଆଲୋଚନା ସଭା'ରେ ନିୟମିତ ଯୋଗଦାନ । ବିଧିବଦ୍ଧ ସାହିତ୍ୟ ଚର୍ଚ୍ଚା ସହ ସାହିତ୍ୟିକ ଜୀବନର ଆରମ୍ଭ । 'କର୍ମ' ଶୀର୍ଷକ ପ୍ରବନ୍ଧ 'ଆଲୋଚନା ସଭା'ରେ ଉପସ୍ଥାପନ । 'ସମ୍ବଲପୁର ହିତୈଷିଣୀ'ରେ ଏହି ପ୍ରବନ୍ଧର ପ୍ରକାଶନ । ଏହା ନନ୍ଦକିଶୋରଙ୍କର

ପ୍ରଥମ ପ୍ରକାଶିତ ରଚନା ।

☐ ୧୮୯୬ : ବାରବର୍ଷ ବୟସ୍କା କୋକିଳ ଦେବୀଙ୍କ ସହ ବିବାହ ।

☐ ୧୮୯୭ : ସାହିତ୍ୟ ଚର୍ଚ୍ଚାରେ ଅତ୍ୟଧିକ ଅଭିନିବେଶ ହେତୁ ଏଫ. ଏ. ପରୀକ୍ଷାରେ ତୃତୀୟ ଶ୍ରେଣୀ ଲାଭ । ରେଭେନ୍ସା କଲେଜରେ ବି. ଏ. ଶ୍ରେଣୀରେ ଯୋଗଦାନ । ପ୍ରଥମ କବିତା 'ପୁଷ୍ପ' 'ଉତ୍କଳ ସାହିତ୍ୟ' (ମେ, ୧୮୯୭) ରେ ପ୍ରକାଶିତ । 'ମେଘ ବରଷିଲା ଟପର ଟପର ' କବିତା (ପରେ 'ନବବର୍ଷା ଭାବନା' ନାମରେ ପରିଚିତ) ନଭେମ୍ବର ମାସରେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ । ଶିକ୍ଷା ଓ ଦୀକ୍ଷା ଗୁରୁ ମଧୁସୂଦନଙ୍କ ସମେତ ସୁଧୀଜନଙ୍କ ଦ୍ୱାରା କବିତାଟି ଉଚ୍ଚ ପ୍ରଶଂସିତ ।

☐ ୧୮୯୮ : ଇଂରାଜୀରେ ଉତ୍କଳର ପଲ୍ଲୀ ଜୀବନ ଉପରେ ଲେଖିଥିବା ପ୍ରବନ୍ଧ ପାଇଁ 'ଟାଲଚେର ପଦକ'ଲାଭ । ମଧୁସୂଦନଙ୍କ ପ୍ରେରଣାରେ ଏହାକୁ କବିତାରେ ରୂପାନ୍ତରିତ କରି 'ଉତ୍କଳର ପଲ୍ଲୀଚିତ୍ର' ଶୀର୍ଷକରେ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶ । 'ଉତ୍କଳ ସାହିତ୍ୟ' ପତ୍ରିକାରେ 'କାକବାରତା' କବିତା ପ୍ରକାଶିତ ।

☐ ୧୮୯୯ : ବିନା ଅନର୍ସରେ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ । ପିତୃବିୟୋଗ ଦୁଃଖ ।

☐ ୧୯୦୦ : ପ୍ରଥମ ପୁସ୍ତକ 'ପଲ୍ଲୀଚିତ୍ର' ପ୍ରକାଶିତ । ଟାଉନ ଭିକ୍‌ଟୋରିଆ ସ୍କୁଲରେ ତିରିଶଟଙ୍କା ମାସିକ ବେତନରେ ସହକାରୀ ଶିକ୍ଷକ ଭାବେ ଯୋଗଦାନ । କବିତା ଗ୍ରନ୍ଥ 'ନିର୍ଝରିଣୀ' ପ୍ରକାଶିତ ।

☐ ୧୯୦୧ : 'ସୀତା ବନବାସ' କାବ୍ୟଗ୍ରନ୍ଥ ଓ 'ବସନ୍ତ କୋକିଳ' କବିତା ସଂଗ୍ରହ ପ୍ରକାଶିତ । 'କୃଷ୍ଣକୁମାରୀ' ଐତିହାସିକ କାବ୍ୟର ପ୍ରକାଶ ।

☐ ୧୯୦୨ : 'ସାମାଜିକ ଯତ୍‌କିଂଚିତ (୭) : ସମାଜ ସଂସ୍କାର' ପ୍ରବନ୍ଧ ପ୍ରକାଶ ଓ ଏଥିଲାଗି ବ୍ରାହ୍ମ ମାନଙ୍କସହ ତାଂକର ସଂପର୍କ ତିକ୍ତ । 'ଚାରୁଚିତ୍ର' ଓ 'କମଳ କୋଇଲି' ପୁସ୍ତକର ପ୍ରକାଶ ।

☐ ୧୯୦୩ : ବ୍ରାହ୍ମ ମାନଙ୍କସହ ସଂପର୍କ ତିକ୍ତ ହେତୁ ଟାଉନ୍ ଭିକ୍‌ଟୋରିଆ ସ୍କୁଲର ଚାକିରି ତ୍ୟାଗକରି କଟକ ଜିଲ୍ଲାବୋର୍ଡ ଅଧୀନରେ ଭ୍ରାମ୍ୟମାଣ ସ୍କୁଲ ବିଭାଗର ସବ୍-ଇନିସପେକ୍‌ଟର ଚାକିରିରେ ଯୋଗଦାନ । 'ନିର୍ମାଲ୍ୟ' କବିତା ସଂକଳନ ପ୍ରକାଶିତ ।

☐ ୧୯୦୪ : 'ଜନ୍ମଭୂମି' ପ୍ରଥମଭାଗ ଓ 'କୃଷ୍ଣକୋଇଲି' କବିତା ପୁସ୍ତିକାର ପ୍ରକାଶ ।

☐ ୧୯୦୫ : ସନ୍ତାନ ହାନୀ ନେଇ ମାନସିକ ଅସ୍ଥିରତା ଓ ମର୍ମବେଦନା ।

- ୧୯୦୬ : କନ୍ୟା ପାର୍ବତୀ ଦେବୀଙ୍କର ଜନ୍ମ ।
- ୧୯୦୭ : କଟକ ନର୍ମାଲ୍ ଟ୍ରେନିଂ ସ୍କୁଲରେ ସହକାରୀ ଶିକ୍ଷକ ଭାବେ ଯୋଗଦାନ । ସରକାରୀ ଚାକିରିରେ ପ୍ରବେଶ ।
- ୧୯୦୮ : ଓଡ଼ିଶାରେ ଭୟଙ୍କର ଦୁର୍ଭିକ୍ଷ । ଦୁର୍ଭିକ୍ଷକୁ ବିଷୟ ଭାବେ ନେଇ 'ଅକାଳ କୋଇଲି' ପୁସ୍ତକ ରଚନା । 'ମୁକୁର'ରେ 'ପଲ୍ଲୀଚିତ୍ର' ଦ୍ୱିତୀୟ ଭାଗର ଧାରାବାହିକ ପ୍ରକାଶ ।
- ୧୯୦୯ : ପ୍ରଥମ ପୁତ୍ର କୃଷ୍ଣକିଶୋରଙ୍କ ଜନ୍ମ ।'ଜନ୍ମଭୂମି' ୨ୟଭାଗ ପୁସ୍ତକାକାରରେ ପ୍ରକାଶିତ ।
- ୧୯୧୦ : କଲିକତାର ଡେଭିଡ୍ ହେୟାର୍ ଟ୍ରେନିଂ କଲେଜ୍‌ର ଶିକ୍ଷକପ୍ରଶିକ୍ଷଣ ପାଠ୍ୟକ୍ରମରେ ଛାତ୍ରଭାବେ ଯୋଗଦାନ ।
- ୧୯୧୧ : ପୂର୍ବୋକ୍ତ ଟ୍ରେନିଂ କଲେଜ୍‌ରୁ ବି.ଟି. ପରୀକ୍ଷାରେ ଉତ୍ତୀର୍ଣ୍ଣ । ସମ୍ବଲପୁର ହାଇସ୍କୁଲରେ ଅସ୍ଥାୟୀ ପ୍ରଧାନ ଶିକ୍ଷକ ଭାବେ ଯୋଗଦାନ । ସେଠାରେ କବି ଗଂଗାଧର ମେହେରଙ୍କ ସହ ଘନିଷ୍ଠ ଆତ୍ମୀୟତା ।
- ୧୯୧୨ : କଟକ ନିର୍ମାଲ୍ ଟ୍ରେନିଂ ସ୍କୁଲ୍‌କୁ ସହକାରୀ ଶିକ୍ଷକଭାବେ ବଦଳି । ତିନି ମାସପରେ ବାଲେଶ୍ୱର ହାଇସ୍କୁଲକୁ ପ୍ରଧାନ ଶିକ୍ଷକ ଭାବେ ବଦଳି ।
- ୧୯୧୩ : ପୁଣି ବଦଳି । ବାଲେଶ୍ୱରରେ ସ୍କୁଲ ସମୂହର ଡେପୁଟି ଇନ୍ସପେକ୍ଟ୍‌ର ଭାବେ ଅବସ୍ଥାପିତ ।
- ୧୯୧୪ : ଦ୍ୱିତୀୟ ପୁତ୍ର ହେମନ୍ତ କିଶୋରଙ୍କ ଜନ୍ମ । ବାଲେଶ୍ୱରରୁ ବଦଳି ହୋଇ କଟକରେ ସ୍କୁଲ ସମୂହର ଡେପୁଟି ଇନ୍ସପେକ୍ଟ୍‌ର ଭାବେ ଅବସ୍ଥାପିତ ।
- ୧୯୧୫ : ପଦୋନ୍ନତି ପାଇ ଆସିଷ୍ଟାଣ୍ଟ ଇନ୍ସପେକ୍ଟ୍‌ର ଭାବେ କଟକରେ ଅବସ୍ଥାପିତ ।
- ୧୯୧୬ : କାର୍ଯ୍ୟନିବାହୀ ଇନ୍ସପେକଟ୍‌ର ଭାବେ ନିଯୁକ୍ତ । 'ଶର୍ମିଷ୍ଠା' କାବ୍ୟ ପ୍ରକାଶିତ ।
- ୧୯୧୭ : ନନ୍ଦକିଶୋରଙ୍କ ପ୍ରଚେଷ୍ଟାରେ କୁସୁପୁର ଉ. ପ୍ରା. ବିଦ୍ୟାଳୟ ମଧ୍ୟଇଂରାଜୀ ବିଦ୍ୟାଳୟ ସ୍ତରକୁ ଉନ୍ନୀତ ।
- ୧୯୨୦ : ନୂତନ ଭାବେ ସୃଷ୍ଟି ହୋଇଥିବା ସ୍କୁଲ ସମୂହର ଜିଲ୍ଲା ଇନ୍ସପେକ୍ଟ୍‌ର ପଦବୀରେ ପୁରୀଠାରେ ଅବସ୍ଥାପିତ । ତୃତୀୟ ପୁତ୍ର ବସନ୍ତ କିଶୋରଙ୍କ ଜନ୍ମ ।
- ୧୯୨୨ : ତାଙ୍କ ଦ୍ୱାରା ପ୍ରସ୍ତୁତ 'Primary Teacher's Manual' ଓ ତା'ର ଓଡ଼ିଆ ଅନୁବାଦ 'ପ୍ରାଥମିକ ଶିକ୍ଷକ ସହଚର ' ପୁସ୍ତକଦ୍ୱୟ ପ୍ରକାଶିତ ।

□୧୯୨୩ : 'ବ୍ୟକ୍ତିଗତ କୃତିତ୍ୱ' ପାଇଁ ବ୍ରିଟିଶ ସରକାରଙ୍କ ଠାରୁ 'ରାୟ ସାହେବ' ଉପାଧି ଲାଭ ।

□୧୯୨୪ : ନାରୀକବି କୁନ୍ତଳା କୁମାରୀଙ୍କ ସହ ଆତ୍ମୀୟତା । ଉଚ୍ଚତର କର୍ମକର୍ତ୍ତାଙ୍କ ସହ ମନୋମାଳିନ୍ୟ ହେତୁ ଚାକିରିରେ ପଦୋନ୍ନତି ନାମଂଜୁର ।

□୧୯୨୫ : ୧୯୧୩ ମସିହାରେ ଆରମ୍ଭ ହୋଇ ଅସମାପ୍ତ ରହିଥିବା 'କନକଲତା' ଉପନ୍ୟାସରେ ରଚନା ସମାପ୍ତି ଓ ପ୍ରକାଶ । ବହୁମୂତ୍ର ରୋଗାକ୍ରାନ୍ତ । ଖଡ୍ଗପୁର ନିକଟରେ ଏକ ଜମିଦାରୀ କ୍ରୟ ।

□୧୯୨୬ : ବାଲେଶ୍ୱର ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ ସ୍ଥାନାନ୍ତର । 'ତରଂଗିଣୀ' ର ପ୍ରକାଶ ।

□୧୯୨୭ : ବହୁମୂତ୍ର ଓ ମଧୁମେହ ରୋଗହେତୁ ଦୃଷ୍ଟିଶକ୍ତିର କ୍ରମ-ହ୍ରାସ । ଭଗ୍ନସ୍ୱାସ୍ଥ୍ୟ ଓ ଚାକିରି ନେଇ ହତାଶାବୋଧରୁ ସରକାରୀ କର୍ମରୁ ମାତ୍ର ଏକାବନବର୍ଷ ବୟସରେ ସ୍ୱେଚ୍ଛାକୃତ ଅବସର ।

□୧୯୨୮ : ଜୁଲାଇ ଏକ ତାରିଖରେ କଟକରେ ତିରୋଭାବ । ସତୀଚଉରା ଠାରେ ଶେଷକୃତ୍ୟ ସଂପନ୍ନ ।

□ ପ୍ରସ୍ତୁତି : ଦେବବ୍ରତ □

# ଏହି ସଂକଳନର ଲେଖା ଓ ଲେଖକ :

୧. 'ଗଛ ଓ କାଠୁରିଆ' ଗୀତ : ଏକ ଅନୁଶୀଳନ - ଡଃ ନଟବର ସାମନ୍ତରାୟ । 'ପ୍ରଗତିବାଦୀ'ରେ ତା୨୨/୧୨/୧୯୯୫ରିଖରେ ଲେଖାଟି ପ୍ରଥମେ ପ୍ରକାଶ ପାଇଥିଲା । ଗବେଷକ, ସମାଲୋଚକ ଓ ସାହିତ୍ୟ-ଐତିହାସିକ । ଅବସର ପ୍ରାପ୍ତ ଓଡ଼ିଆ ପ୍ରାଧାପକ । ଠିକଣା : ବାଣୀଭବନ, ସାମନ୍ତରାୟପୁର, ଭୁବନେଶ୍ୱର - ୨

୨. ପଲ୍ଲୀକବି ନନ୍ଦକିଶୋର - ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) । 'ପ୍ରଗତିବାଦୀ'ରେ ତା ୨୦/୧୨/୧୯୯୨ ରିଖରେ ଲେଖାଟି ପ୍ରଥମେ ପ୍ରକାଶିତ । କବି, ସମାଲୋଚକ ଓ ଗବେଷକ । ଅବସରପ୍ରାପ୍ତ ଓଡ଼ିଆ ପ୍ରଫେସର । ଠିକଣା : 'ଗୀତିକା', ନାଗେଶ୍ୱର ଟାଙ୍ଗି, ଭୁବନେଶ୍ୱର-୨

୩. ପଲ୍ଲୀକବିଙ୍କର 'ପଲ୍ଲୀଚିତ୍ର' : ଏକ କଳନା - ଡଃ ବାସୁଦେବ ସାହୁ । 'ପ୍ରଗତିବାଦୀ'ରେ ତା ୧୮/ ୧୨/୧୯୯୪ ରିଖରେ ପ୍ରଥମେ ପ୍ରକାଶିତ । ପ୍ରାବନ୍ଧିକ ଓ ଭାଷାତତ୍ତ୍ୱବିତ୍ । ଠିକଣା : ପ୍ରଫେସର, ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର - ୪

୪. ନନ୍ଦକିଶୋରଙ୍କ କଥାଶିଳ୍ପ : 'କନକଲତା' - ଡଃ ବିଭୂତି ପଟ୍ଟନାୟକ । 'ପ୍ରଗତିବାଦୀ'ରେ ପ୍ରଥମେ ତା ୨୦/୧୨/୯୨ ରିଖରେ ପ୍ରକାଶିତ । କଥାଶିଳ୍ପୀ, ସମାଲୋଚକ ଓ ସଂପାଦକ । ଅବସର ପ୍ରାପ୍ତ ଓଡ଼ିଆ ପ୍ରାଧାପକ । ଠିକଣା : ୩ ଏବ୍, ଲୁଇସ୍ ରୋଡ୍, ଭୁବନେଶ୍ୱର - ୨

୫. ପଲ୍ଲୀଜୀବନର ଦାର୍ଶନିକ : ନନ୍ଦକିଶୋର ଓ ରବର୍ଟ ଫ୍ରଷ୍ଟ - ଡଃ ବନମାଳୀ ବାରିକ । 'ପ୍ରଗତିବାଦୀ' ରେ ତା ୨୩/୧୨/୧୯୯୬ ରିଖରେ ପ୍ରଥମେ ପ୍ରକାଶିତ । ପ୍ରାବନ୍ଧିକ ଓ ଗବେଷକ। ଠିକଣା : ପ୍ରାଧ୍ୟାପକ, ଓଡ଼ିଆ ବିଭାଗ, ରାଜଧାନୀ କଲେଜ, ଭୁବନେଶ୍ୱର

୬. ବର୍ଷା ଓ ବିଷାଦ : କବି ନନ୍ଦକିଶୋର - ଡଃ ପ୍ରତିଭା ଶତପଥୀ । 'ପ୍ରଗତିବାଦୀ'ରେ ପ୍ରଥମେ ତା ୨୨/୧୨/୧୯୯୫ ରିଖରେ ପ୍ରକାଶିତ । କବି ଓ ସମାଲୋଚିକା । ଠିକଣା : ପ୍ରଧାପିକା, ଓଡ଼ିଆ ବିଭାଗ, ରମାଦେବୀ ମହିଳା କଲେଜ, ଭୁବନେଶ୍ୱର

୭. ଉତ୍କଳ ସମ୍ମିଳନୀ କବି ଗୋଷ୍ଠୀ ଓ ପଲ୍ଲୀ କବି ନନ୍ଦକିଶୋର - ଡଃ ଗୋପାଳକୃଷ୍ଣ ଶ୍ରୀଚନ୍ଦନ । 'ପ୍ରଗତିବାଦୀ'ରେ ତା ୨୨/୧୨/୯୬ ରିଖରେ ପ୍ରଥମେ ପ୍ରକାଶିତ । ଅବସରପ୍ରାପ୍ତ ଅତିରିକ୍ତ ନିର୍ଦ୍ଦେଶକ, ସଂସ୍କୃତି ବିଭାଗ । ଗବେଷକ ଓ ସାହିତ୍ୟ ସଂଗଠକ । ଠିକଣା : ଏନ୍/୩-୨୮୭, ନୂଆପଲ୍ଲୀ, ଭୁବନେଶ୍ୱର - ୧୫

୮. ନନ୍ଦକିଶୋର : ଏକ ଶ୍ରଦ୍ଧା ନିବେଦନ - ଡଃ ସଂଘମିତ୍ରା ମିଶ୍ର । 'ପ୍ରଗତିବାଦୀ'ରେ ତା ୧୯/

୧୨/୯୩ ରିଖରେ ପ୍ରଥମେ ପ୍ରକାଶିତ । କବି, ସମାଲୋଚିକା । ଠିକଣା : ପ୍ରାଧ୍ୟାପିକା, ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର - ୪

୯. ନବଯୁଗର ଚାରଣ : ନନ୍ଦକିଶୋର - ଶ୍ରୀ ଦେବେନ୍ଦ୍ର କୁମାର ଦାଶ । 'ପ୍ରଗତିବାଦୀ'ରେ ତା ୨୨/୧୨/୧୯୯୪ ରିଖରେ ପ୍ରଥମେ ପ୍ରକାଶିତ । ଗବେଷକ ଓ ସମାଲୋଚକ । ଠିକଣା : ଅଧ୍ୟାପକ, ଓଡ଼ିଆ ବିଭାଗ, ମ୍ୟୁନିସିପାଲ୍ କଲେଜ, ରାଉରକେଲା ।

୧୦. ଉତ୍କଳୀୟ ନାରୀ ସମାଜ ଓ ନନ୍ଦକିଶୋର - ଡଃ ଶରତ ଚନ୍ଦ୍ର ନାୟକ । 'ସପ୍ତର୍ଷି'ରେ ଜାନୁଆରି ୧୯୭୭ ସଂଖ୍ୟାରେ ପ୍ରଥମେ ପ୍ରକାଶିତ । ଓଡ଼ିଆ ସାହିତ୍ୟର ଅଧ୍ୟାପକ ପ୍ରାବନ୍ଧିକ ଡଃ ନାୟକ ଏବେ ଦିବଙ୍ଗତ ।

୧୧. ନନ୍ଦକିଶୋର ବଳ - ଡଃ କୈଳାଶ ଚନ୍ଦ୍ର ଦାଶ । 'ପ୍ରଗତିବାଦୀ'ରେ ତା୨୪।୧୨।୧୯୯୬ ରିଖରେ ପ୍ରଥମ ପ୍ରକାଶିତ । ଗବେଷକ ଓ ପ୍ରାବନ୍ଧିକ । ଠିକଣା-ବରିଷ୍ଠ ଅଧାପକ, ଇତିହାସ ବିଭାଗ, ଢେଙ୍କାନାଳ କଲେଜ ।

୧୨. ଋତୁବର୍ଣ୍ଣନ ପରମ୍ପରାରେ ନନ୍ଦକିଶୋରଙ୍କ ତୁଳନୀୟ ଶକ୍ତି-ଆଚାର୍ଯ୍ୟ ଭାବାନନ୍ଦ । 'ପ୍ରଗତିବାଦୀ'ରେ ପ୍ରଥମେ ତା୨୨।୧୨।୧୯୯୬ ରିଖରେ ପ୍ରକାଶିତ । ପୂର୍ବ ନାମ ଡଃ ଭାବଗ୍ରାହୀ ମିଶ୍ର । ଓଡ଼ିଶା ତଥା ଯୁକ୍ତରାଷ୍ଟ୍ର ଆମେରିକାର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଅଧାପନା କରିଛନ୍ତି । ପ୍ରାବନ୍ଧିକ, ସଂଗଠକ । ଠିକଣା : ସି-୫, ଖାରବେଳ ନଗର, ୟୁନିଟ - ୩, ଭୁବନେଶ୍ୱର-୧

୧୩. ପଲ୍ଲୀପ୍ରକୃତିର କବି ନନ୍ଦକିଶୋର - ଡଃ ବସନ୍ତ କୁମାର ପଣ୍ଡା । ଗବେଷକ ଓ ସମାଲୋଚକ । ବରିଷ୍ଠ ଅଧ୍ୟାପକ, ଓଡ଼ିଆ ବିଭାଗ, ନିମାପଡ଼ା କଲେଜ, ନିମାପଡ଼ା, ପୁରୀ ।

୧୪. ପଲ୍ଲୀପ୍ରାଣ ନନ୍ଦକିଶୋର - ଡଃ ହରପ୍ରସାଦ ପରିଚ୍ଛା ପଟନାୟକ । 'ପ୍ରଗତିବାଦୀ'ରେ ତା୨୨/୧୨/୧୯୯୬ ରିଖରେ ପ୍ରଥମେ ପ୍ରକାଶିତ । ଇଂରାଜୀ ପ୍ରାଧ୍ୟାପକ, କବି । ଠିକଣା : ଭି.ଆର୍ - ୫୫, ୟୁନିଟ୍ - ୬, ଭୁବନେଶ୍ୱର

୧୫.'ନିର୍ଝରିଣୀ'ରେ ଜୀବନାଲେଖ୍ୟ - ଡଃ ବିଜୟ କୁମାର ମହାନ୍ତି । ପ୍ରାବନ୍ଧିକ ଓ ଗାଳ୍ପିକ । ଠିକଣା : ପ୍ରାଧ୍ୟାପକ, ଓଡ଼ିଆ ବିଭାଗ, ବିଜେବି କଲେଜ, ଭୁବନେଶ୍ୱର - ୧୪

୧୬. ମାନବିକ ଚେତନାର ଉତ୍ତରଣ : ନନ୍ଦକିଶୋରଙ୍କ ବୈଶିଷ୍ଟ୍ୟ - ଶ୍ରୀ ସୌରୀବନ୍ଧୁ କର । କାନାରା ବ୍ୟାଂକ୍‌ର ଅଫିସର । ପ୍ରାବନ୍ଧିକ ଓ ଗାଳ୍ପିକ । ଠିକଣା : ପ୍ଲଟ ନଂ. ୫୦୧୨/୫୮୫୩, ଗଜପତିନଗର, ଭୁବନେଶ୍ୱର - ୫

୧୭. ଉଡ଼ିଗଲେ ଗେଣ୍ଡାଳିଆ - ଡଃ ପ୍ରଦୀପ କୁମାର ଧଳ । 'ପ୍ରଗତିବାଦୀ'ରେ ତା ୧୮/୧୨/୧୯୯୪ ରିଖରେ ପ୍ରଥମେ ପ୍ରକାଶିତ । ଆଲୋଚକ ଓ କବି । ଠିକଣା : ଅଧ୍ୟାପକ, ଓଡ଼ିଆ ବିଭାଗ, ଖ୍ରୀଷ୍ଟ କଲେଜ, କଟକ - ୧ □